# ସର୍ବନାଶର ଯାତ୍ରୀ

—ଲେଖକ—

ଶ୍ରୀ କାଳିପ୍ରସନ୍ନ କବି

—ପ୍ରକାଶକ—

ସାରସ୍ୱତ ପ୍ରେସ

କଟକ

ପ୍ରଥମ ସଂସ୍କରଣ

୧୯୩୬

ମୂଲ୍ୟ—ଆଠ ଅଣା

# ଉତ୍ସର୍ଗ ପତ୍ର



ମୋ ଦେଶର ତରୁଣ-ସଙ୍ଘର
ହାତରେ ଅର୍ପଣ କଲି ।

—କାଳିପ୍ରସନ୍ନ

ବାଣୀ-ପୂଜା
କବିକୁଟୀର
ଷଢ଼େଇକଳା
୧୩୪୩

# ଉପହାର



ଶ୍ରୀ... ... ... ... ... ... ... ... ... ... ...ଙ୍କୁ

ନିଦର୍ଶନ ସ୍ୱରୂପ

ଅର୍ପିତ ହେଲା—

ଶ୍ରୀ... ... ... ...



# ସର୍ବନାଶର ଯାତ୍ରୀ

ପାହାନ୍ତିଆ ପହରୁ ଅଝରଝର ବର୍ଷା ଝରୁଛି—ବିରାମହୀନ-ବିଶ୍ରାମ-ହୀନ; ପଥଘାଟ, ବିଲଖାଲ ଜଳରେ ଜଳାରଣ୍ୟ । ଝୁଲସୁଲିଆ ଓଦା ପବନରେ ଶିହରଣ ଭରି ଆସୁଛି ଦମକେ ଦମକେ—ଚୌଦିଗେ । ରବିବାର, ଅଫିସ ବନ୍ଦ; ସୁତରାଂ ହାତରେ କାମଧନ୍ଦା କିଛି ନାହିଁ । ଭାବିଥିଲି, ଖାଇ-ପିଇ ଦିନଟାଯାକ ବେଶ ଆରାମରେ ବିଛଣାରେ ଶୋଇବସି କଟାଇ ଦେବି; କିନ୍ତୁ ସେଥିରେ ବାଦ ସାଧିଲା ମୋର ସାନ ଶଳା ଅନଙ୍ଗ—ଏକା ସେ କାହିଁକି, ସଙ୍ଗରେ ଯୋଗ ଦେଲେ ତା ନାନୀ ପ୍ରତିମା, ଆଉ ମୋର ସାନ ଭାଇ ପ୍ରଭାସ ।

ପ୍ରାୟ ଦେଢ଼ ବର୍ଷ ପରେ ଅନଙ୍ଗ ଆମ ଘରକୁ ଆସିଛି; ସୁତରାଂ ସକାଳଟା ତାହାରି ସଙ୍ଗରେ ଗଳ୍ପସଳ୍ପରେ କଟିଗଲା । ପ୍ରଭାସ ତ ଅକସ୍ମାତ୍ ଅନଙ୍ଗକୁ ଦେଖି ଆକାଶର ଚନ୍ଦ୍ର ହାତରେ ପାଇଲା । ଦୁହିଁଙ୍କ ବୟସ ପ୍ରାୟ ସମାନ—ଏକାଠି ଥାଇ ପାଠ ପଢ଼ନ୍ତି । ଭାବନାର ଶଳା; ସୁତରାଂ ସମ୍ପର୍କଟା ମଧ୍ୟ ମଧୁର । ଅଧିକନ୍ତୁ ଦୁହେଁଯାକ ଏ ବର୍ଷ ପ୍ରଥମ ବିଭାଗରେ I. A. ପାସ୍ କରିଛନ୍ତି । ପ୍ରାଣେ ପ୍ରାଣେ ଫୁର୍ତ୍ତିର ଉତ୍ସ ଛୁଟୁଛି ସେମାନଙ୍କର ।

ଖାଇବାକୁ ବସିଛୁ ତିନି ଜଣ—ମୁଁ, ପ୍ରଭାସ ଓ ଅନଙ୍ଗ । ପାଚକ ହାତରୁ ଖାଦ୍ୟ ନେଇ ପରିବେଷଣ କରୁଛନ୍ତି ସ୍ୱୟଂ ଗୃହିଣୀ । ଏକେ ଝଡ଼ ବର୍ଷା, ତହିଁରେ ମୁଣ୍ଡି ଭାଇର ଶୁଭାଗମନ; ସୁତରାଂ ଖାଇବାଟା ଅତି ଟିକିଏ ଯେ ଗୁରୁଗମ୍ଭୀର ଭାବରେ ଚେଗ ଉପନ୍ତ ହେବ, ସେ କଥା ନ କହିଲେ ମଧ୍ୟ ଚଳେ । ପଲଉ, କୁର୍ମୀ, କା'ରି, କୌଣସି କଥାର ଊଣା ନାହିଁ; କିନ୍ତୁ ନୀରବରେ ଖାଇବା ମୋର କୋଷ୍ଠିରେ ଲେଖା ନାହିଁ । ଅନଙ୍ଗକୁ

ଭୁଜ ହୋଇ ଖାଉଥିବାର ଦେଖି କହିଲି, "ପ୍ରଭାସ, ଦେଖୁଛୁ—ଅନଙ୍ଗର ସମୟଜ୍ଞାନ କମିଛି ?"

ଅନଙ୍ଗ ଓ ପ୍ରଭାସ ଦୁହେଁଯାକ ମୋ ମୁହଁକୁ ଅନାଇ ରହିଲେ। କହିଲି, "ବୁଝି ପାରିଲୁ ନାହିଁ ? ଦେଖୁନୁ ନା, ବାଜେ ସମୟ ନଷ୍ଟ ନ କରି ହଲଚଢ଼ା ବଳଦ ପରି କିମିତି ମୁଣ୍ଡ ପୋତି ଏକ ମନରେ ଖାଇ ଚାଲିଛି।"

ପ୍ରଭାସ କହିଲା, "ଅଙ୍ଗସ୍ଥାନ ସର୍ବାଙ୍ଗ ଦେଇ ଗ୍ରାସୁଛି ନା !'

ଅନଙ୍ଗ କହିଲା, "କେବଳ ଖାଉ ନାହିଁ, ଖାଇବା ସଙ୍ଗରେ ନନ୍ଦ ମହାପାତ୍ରଙ୍କ ଦାଢ଼ିଟାକୁ ମଧ୍ୟ ଦେଖୁଛି।"

"ଖାଇଲା ବେଳେ ମୋ ଦାଢ଼ିଟା ଉପରେ ନଜର କାହିଁ କି ?"

"ଇଯ୍ଯା ପୂର୍ବରେ ତ ଆପଣଙ୍କ ମୁଖଦେଶର ଦର୍ଶନ ପାଇ ନ ଥିଲି। ସେତେବେଳେ କଚ୍ଛପ ପରି ଦେହରୁ ମୁଣ୍ଡଟା ଯାଏ ଦିଶୁଥିଲା ମାତ୍ର; ବାକି ଅଂଶ ତ ଖୋଳରେ ଘୋଡ଼ା। ବାସ୍ତବିକ ନନ୍ଦ ଆପଣେ, ଆପଣ ଭାରି ଦୁର୍ବଳ ହୋଇପଡ଼ିଛନ୍ତି।"

"ନାଗର ଭାଇ, ତମମାନଙ୍କ ଆଖିଗୁଡ଼ା ଦୁର୍ବଳ ବୋଲି ତମେ ମାନେ ହିଁ ଦୁନିଆଟାକୁ ଦୁର୍ବଳ ଦେଖ।"

"ସେଥିପାଇଁ ଅମ ଅଖିରେ ଦାନଗ୍ରାହ ଚଷମାଟା ଲାଗି ରହିଛି।"

"ଆରେ ଚଷମାଟା ଆଜିକାଲିକାର ମରଦ-ଗହଣା, ସ୍ତ୍ରୀଲୋକମାନେ ଚୂଡ଼ି, ଅନନ୍ତ, ବ୍ରେସ୍‌ଲେଟ୍, ଚେନ୍, ନେକ୍‌ଲେସ୍—ଏତେ ପିନ୍ଧିବେ, ଆଉ ଆମେ ଖଣ୍ଡେ ୧୦।୧୫ ଟଙ୍କାର ଚଷମା ନ ପିନ୍ଧିଲେ ସେମାନଙ୍କ ସଙ୍ଗରେ ସମାନ ତାଳରେ ଚାଲିବା କିମିତି ? ତମର ମଧ୍ୟ ଚଷମାର ଦରକାର ପଡ଼ିବ ଯେ—ରହ, ଅବଶ୍ୟ ନନ୍ଦ ଆପଣଙ୍କୁ ଦେଖିବା ପାଇଁ ନୁହେଁ। ଦାନଗ୍ରାହ ଦେଖିବା ଲୋକଙ୍କର ଅମଦାନି ହେଉ—ସେତେବେଳେ ଚଷମାର ଦରକାର କଣ, ବୁଝିବ।"

"ଆପଣ ବୁଝନ୍ତୁ, ଆମର ଦରକାର ନାହିଁ।"

"ମୁଁ ତ ହାଡ଼େ ହାଡ଼େ ବୁଝୁଛି। କିଛି କେତେ ବେଶରେ, କେତେ ରୂପରେ ଦେଖେ। ପଚାର ତମ ନାଗକୁ।"

ଦ୍ୱାରରେ ଥାଇ କୃଷ୍ଣ ମ ଖେଷରେ ପ୍ରଥମା କହିଲା,"କି ଅସଭ୍ୟ !"

"ଶୁଣିଲ ନାରୀଙ୍କ ଗୁଣ ! କମିତ ସ୍ୱାମିଭକ୍ତ ! ଅସଭ୍ୟ, ପଶୁ, କେତେ ବିଶେଷଣରେ ଅଭିହିତ କଲେଣି ।"

"ବାସ୍ତବିକ ଏହା ନାରୀଙ୍କର ମହା ଅପରାଧ—ନ ବ୍ରୂୟାତ୍ ସତ୍ୟ-ମପ୍ରିୟମ୍ ।"

"ଶୁଣ୍ରୀର ସାଙ୍ଗୀ ମାତାଲ । ବାସ୍ତବିକ୍ ଚିକିଏଅଧେ ଦୁର୍ବଳ ହୋଇ ପଡ଼ିଥିଲେ ମଧ୍ୟ ସେଥିପାଇଁ ମୋର ବନ୍ଧୁ ମାନ ଅପରାଧ ହୋଇପାରେ ନାହିଁ—ଯେଉଁ ଗୁଣ ଥିଲେ ସ୍ୱାମିଦେବତାର ଦହଟା ଦେଖି ଚିକିଏ ମୋଟା-ମୋଟି ହୁଏ, ତମ ନାରୀଙ୍କଠାରେ ସେସବୁ ଗୁଣର ଅଭାବ କଷ୍ଟସୂ ।"

ଗ୍ଲାସରେ ପାଣି ଢ଼ାଳୁ ଢ଼ାଳୁ ପ୍ରଥମା କହିଲେ, "ନାରୀର ତ ଯେତେ ଦୋଷ ! କେଉଁଥିରେ ଗୁଣ ଅଛି କି ?"

"ଅଛି, ଅଛି, ଅନେକ ଅଛି । ଯଥା ପରନିନ୍ଦା, ପରଚର୍ଚ୍ଚା, ସ୍ୱାମୀଙ୍କୁ ଅସଭ୍ୟ, ପଶୁ ପ୍ରଭୃତି ଅକଥ୍ୟକଥନ, ସ୍ୱାମୀ ସହିତ କଳିକଜିଆ—ଇମିତି କେତେ କେତେ ଗୁଣ ରହିଛି । ଗୁଣ କଥା ଏକ ମୁହଁରେ କହିଲେ ସରିବ ?"

"ପରନିନ୍ଦା, ପରଚର୍ଚ୍ଚା କରିବାଟା ଆମର ଧର୍ମ ନୁହେଁ—ସେଟା ପୁରୁଷ ଜାତିର ଏକଚାଟିଆ ଅଧିକାର । ପଚାରିଲ୍ ଅନଙ୍ଗ, ଗଣ୍ଡିଏ ଖାଇ ତାର ଦଶଗୁଣ ଔଷଧ ଖାଇବା ପାଇଁ ନାରୀ କଣ ଗୁଣ ଦେଇଛନ୍ତି ?"

"ଆହା, ଏଥିରୁ ତ ପ୍ରମାଣ ହୁଏ ଦୋଷ କାହାର ? ତମ ସୁପାଚ୍ୟ ଖାଦ୍ୟ ଗଣ୍ଡିଏ ଖାଇ ଦଶଗଣ୍ଡା ଔଷଧ ଖାଇବାକୁ ପଡ଼େ । ପେଟ ପୂରାଇ ସେ ସବୁ ଖାଇଲେ ଅବସ୍ଥା କଣ ହୁଅନ୍ତା, ତମ ଭାଇକି ପଚାରିଲ ?"

"ମୁଁ ତ ରାତି ଦୁଇଟା ଯାଏ ଜଗାଗର ରହି କାହାରିକି ଲେଖିବାକୁ ଜମା କହେ ନାହିଁ । ଦୁଇଡିକ ଘଣ୍ଟା ଅଫିସରେ ରହି ବାକି ସମୟତକ ବିଛଣାରେ ଲମ୍ବ ହୋଇ ରହିବାକୁ ମଧ୍ୟ କାହାରିକୁ କହେ ନାହିଁ । ଚଲା-ବୁଲା ନ କଲେ ହଜମ କାହାର ଭଲ ଥାଏ, ଦୁନିଆରେ ଭଲା ?"

ଅନଙ୍ଗ ପଚାରିଲା,"ଏତେ ରାତିଯାଏ କଣ ଲେଖନ୍ତି, ନନ୍ଦ ଅପଣେ ?"

"ପାଗଳ ନା କଣ—ସତେ ମୁଁ ରାତିଯାକ ବସି ଲେଖୁଥାଏ ନା !"

"ସତ ନୁହେଁ ? ଖୋଲିବ ଡ୍ରୟାରଟା ?"

"ଦିନରେ କଣ ଲେଖାଯାଏ ନାହିଁ ?"

"ଯିବ ନାହିଁ କିଆଁ ? ଦିନଯାକ ତ ଘର ଭିତରେ କେହି ବସନ୍ତି ନାହିଁ ? କାହାରେ ବସି ଲେଖିଲେ କାଳେ କାହାର ଆଖିରେ ପଡିଯିବ ଯଦି !"

ଅନଙ୍ଗ ପଚାରିଲା, "ଇମିତି କଣ ଏତେ ଲେଖନ୍ତି, ନନ୍ଦ ଆପଣେ ?"

"କିଛି ନୁହେଁ, ଯେତେ ସବୁ ବାଜେ କଥା, ଶୁଣ କାହିଁକି ?"

"ବାଜେ କଥା ! କହିବ—?"

"କଣ କହିବ ?"

"ସେହି ଉପନ୍ୟାସଟା ?"

ଅନଙ୍ଗ ମହାଉଲ୍ଲାସରେ କହିଲା, "ଲେଖୁଛନ୍ତି ସତେ ?"

"ପାଗଳ, ମୁଁ କେବେ ଲେଖେ—ଶୁଣିଛ ?"

"ଶୁଣି ନ ଥିଲେ ଯେ ଶୁଣିବ ନାହିଁ ବା ଆପଣ ଲେଖି ନ ଥିଲେ ବୋଲି ଯେ କେବେ ଲେଖିବେ ନାହିଁ—ଇଏ କଣ ଗୋଟେ କଥା ? ରାମାୟଣ ଲେଖିବା ପୂର୍ବରୁ ଦସ୍ୟୁ ରତ୍ନାକର ଯେ କିଛି ଲେଖି ନ ଥିଲେ, ଏହା ମୁଁ 'ହଲପ୍' କରି କହିପାରେ । କଣ ଲେଖିଛନ୍ତି, ଆଜି ଦେଖାଇବାକୁ ପଡ଼ିବ କିନ୍ତୁ ନନ୍ଦ ଅପଣେ ।"

"କିଛି ଲେଖିଥିଲେ ତ ଦେଖାଇବ ।"

ଅଞ୍ଚଳରୁ ଚାବିଗେଣ୍ଡାଟା ଖୋଲି ପ୍ରତିମା ଅନଙ୍ଗକୁ ଧରାଇ ଦେଇ କହିଲା, "ଡ୍ରୟାର ଖୋଲିଲେ ସତମିଛ ସବୁ ଜଣାପଡ଼ିବ ଯେ ।"

"ଗୁହଶତ୍ରୁ ବିଭୀଷଣ !" ଅନଙ୍ଗ ଚାବିଗେଣ୍ଡା ଅଧିକାର କରି କହିଲା, "ନନ୍ଦ ଆପଣେ, ଆପଣ ତ ଭାରି ମିଛୁଆ !"

"ବରଂ ସେ ଅପବାଦ ଧର୍ମପୁତ୍ର ଯୁଧିଷ୍ଠିରଠାରେ ଅଛି; ମୋଠାରେ ତାର ଚିହ୍ନମାତ୍ର ରହିପାରେ ନାହିଁ । ସତ କହୁଛି, ନଭେଲନାଟକ ଜମା ଲେଖୁ ନାହିଁ । ତେବେ ଏଥର ଶଶୁରଙ୍କର ଅନୁରୋଧରେ ପଡି ବହରମପୁର ଯାଇଥିଲି, ସେଠାରେ ଅଦ୍ଭୁତ ଦୁଇଟି ପାଗଳଙ୍କୁ ଦେଖିଲି । ସେମାନଙ୍କଠାରୁ ଯାହା ଶୁଣିଲି, ସେସବୁଡ଼ାକୁ କେବଳ ସଜାଇ ଲେଖି-ଦେଇଛି ମାତ୍ର । ଏଥିରେ ମୋର ନିଜସ୍ୱ କିଛି ନାହିଁ କହିଲେ ଚଳେ ।"

"ଓଃ ! ସେଥିପାଇଁ ଏଥର ଏତେଦିନ ବହ୍ମପୁରରେ କଟାଇ ଦେଲେ—ନା ?"

"କଥାଟା ମିଛ ନୁହେଁ । ବାସ୍ତବିକ ଅନଙ୍ଗ, ସେ ଦୁଇଭାଇ ବଡ଼ ଅଦ୍ଭୁତ ଧରଣର ପାଗଳ । ଦିନସାରା ଚୁପଚାପ୍ ବସିଥିବେ, ଯିଏ ଯେତେ ଡାକୁ, ଯେତେ ପଚାରୁ, ଜମା କଥା ନାହିଁ । ସେମିତି ନୀରବରେ ଦଶପନ୍ଦର ଦିନ କଟିଯିବ । ହଠାତ୍ ଦିନେ କାନ୍ଦିବାକୁ ଆରମ୍ଭ କରିବେ ! କି ସେ ମର୍ମନ୍ତୁଦ ଯନ୍ତ୍ରଣା ତାଙ୍କର— ! କିଛିକ୍ଷଣ ପରେ ଅପେ ଅପେ ମୂର୍ଚ୍ଛିତ ହୋଇପଡ଼ିବେ ! ବୁଝିଲ ? ସଂଜ୍ଞା ପାଇ ଯାହାକୁ ଦେଖିବେ, ତାକୁ ତାଙ୍କ ଜଣେ ପଚାରିବ—'କହନ୍ତୁ ଆପଣ, ଏଥିରେ ମୋର ଦୋଷ କଣ ? ଶୁଣନ୍ତୁ'' ବୋଲି ତାର ଜୀବନ-କାହାଣୀ ଆରମ୍ଭ କରିବ । ଅନ୍ୟ ଜଣେ ଠିକ ସେହିପରି ଚେତା ପାଇ କହିବ—'ମୁଁ କଣ ଚାହିଁଥିଲି, ନା ଜାଣିଥିଲି ? ଏଥିରେ ମୋର ଦୋଷ କଣ, ଆପଣ କହନ୍ତୁ । ସତ କହିବେ, ଏଥିରେ ମୋର ଅପରାଧ ଅଛି ?' ତା ପରେ ଶୁଣୁଥାଅ ତାର ଉପାଖ୍ୟାନ । ଏହି ଦୁଇଟି ପାଗଳ ପାଇଁ ଶଶାଙ୍କ ମୋତେ ଏତେ ଜୋର କରି ନେଇଗଲା । ସେ ତ ନିଜେ ସୁପରିନ୍ଟେଣ୍ଡେଣ୍ଟ୍, ସୁତରାଂ ମୋର ଅପ୍ରତିହତ ଗତି । ସେମାନେ କାନ୍ଦିବେ ନା ମୁଁ ଘରକୁ ଫେରିବି ? ଆଜି କାଲି, ଅଜି କାଲି କରି ସାତ ଦିନ ପରେ ଜଣେ ହଠାତ୍ କାନ୍ଦିବାକୁ ବସିଲା । କେବଳ ସେ କାନ୍ଦେ; ସଙ୍ଗେ ସଙ୍ଗେ ଅଭିଶାପ ଦିଏ, ନିଜକୁ ବାର ବାର—ଶତବାର ! ପରକୁ ମଧ୍ୟ ଇମିତି ଅଭିଶାପ ଦେବାକୁ ପ୍ରାଣ ଥରିଉଠିବ, ଅଥଚ ତାହା ହିଁ ତାର କାନ୍ଦିବାର ଭାଷା । ଦୁଇ ଭାଇର ପୁଣି ଦେଖାସାକ୍ଷାତ୍ ହେବାର ଉପାୟ ନାହିଁ । ଦେଖା ହେଲେ ମୁସ୍କିଲ ! ଜଣେ ଧାଇଁଯିବ ଭାଇକୁ ଆଦର କରିବା ପାଇଁ; ଆଉ ଆସିବ, ଏହେ ଏହେ ଲାଲ ଆଖି କରି ହତ୍ୟା କରିବ ବୋଲି ! ସୁତରାଂ କାହାରି କାହାରି ଦେଖାସାକ୍ଷାତ୍ ହୁଏ ନାହିଁ । ଜଣେ ଥାଏ ସାତ ନମ୍ବର କୋଠରୀରେ, ଆଉ ଜଣେ ୩୭ ନମ୍ବରରେ । ୭ ନମ୍ବରର କାହାଣୀ ଶୁଣି ମୋର ତ ହଲଚଲ ହେବାକୁ ଜମା ମନ ହେଲା ନାହିଁ । ବଡ଼ ଚିତ୍ତାକର୍ଷକ, କରୁଣ, ଉଚ୍ଛୃଙ୍ଖଳ କାହାଣୀ ତାର ! ୭ ନମ୍ବରର କଥା ଶୁଣିଲେ ୩୭ ନମ୍ବରର କଥା ନ ଶୁଣି ଆସିବା ଅସମ୍ଭବ କଥା; ସୁତରାଂ ତାହାରି ଅପେକ୍ଷାରେ ଅଧିକ ୧୫ ଦିନ କଟିଗଲା ।"

"ଅନ୍ତ ତେବେ ଆଜ ଶୋଇପାରିବେ ନାହିଁ । ସମସ୍ତଟା ପଢ଼ି ଶୁଣାଇବାକୁ ହେବ ।"

"ନ ଶୋଇ ମୁଁ ସ୍ୱର୍ଗକୁ ମଧ୍ୟ ଯିବାକୁ ନାରାଜ ।"

"ନା, ନା ଶୁଣନ୍ତୁ । ଏବେ ବର୍ଷା ହେଉଛି—ସୂର୍ଯ୍ୟତାପ ନାହିଁ; ତା ପରେ ଯେଉଁ ଗୁରୁପାକ ଆହାର କରିଛନ୍ତି ! ( ପରିମାଣ ମଧ୍ୟ କମ ନୁହେଁ !) ଦିନରେ ଶୋଇଲେ ତ ହଜମ କରିବା କଠିନ ହେବ; ସୁତରାଂ ବସି ବସି ପଢ଼ାଯାଉ ।"

ପ୍ରଭାସ କହିଲା, "ମନ୍ଦ ନୁହେଁ ।"

ଜାଣେ ମୁଁ ଏମାନଙ୍କ ହାତରୁ ନିସ୍ତାର ମିଳିବ ନାହିଁ । କହିଲି, "ହେଉ, କିନ୍ତୁ ପଢ଼ିବାଭାର ମୋର ନୁହେଁ । ପ୍ରଭାସ ପଢ଼ୁ; ମୁଁ ବରଂ ଶୋଇ ଶୋଇ ଶୁଣିବି ।"

ଅନଙ୍ଗ କହିଲା, "ଆପଣ ଯେ 'ଶୁଣୁଛି' କହି ନିଦ ଯିବେ, ସେ ହେବ ନାହିଁ, ନିଦ ଆପଣେ ।"

"ଯମହାତରୁ ମୁକ୍ତି ଅଛି; କିନ୍ତୁ ତମମାନଙ୍କଠାରୁ—"

"ତା ମଧ୍ୟ ନାହିଁ । କମିତି ? ଜାଣନ୍ତି ତ ! ଗୁଲନ୍ତୁ ।"

"ଗୁଲ, ତମ ନାକି ଖାଇବା ପର୍ଯ୍ୟନ୍ତ ମୁଁ ଟିକିଏ ବିଶ୍ରାମ କରିନିଏ ।"

"ନିଅନ୍ତୁ; କିନ୍ତୁ ଶୋଇବାକୁ ଦେବି ନାହିଁ ।"

ପ୍ରତିମାର ମଧ୍ୟ ଅଗ୍ରହ କମ୍ ନୁହେଁ; ମାନ ଭାଲି ଲେଖାଟା ଶେଷ କରିଛି । ଏତେ ଦିନ 'ଶେଷ ହେଉ' କହି ପ୍ରତିମାକୁ ନିରସ୍ତ ରଖିଥିଲି । ଅଜ ସେ ନାକରେ-କାନରେ ଦୁଇଗୁଣ୍ଡା ଗୁଞ୍ଜିଦେଇ ଧାଇଁଅସିଲେ । ପ୍ରଭାସ ପଢ଼ିବାକୁ ଅରମ୍ଭ କଲା:—

## ୬ ନମ୍ବର୍ କୋଠରୀ
## ବହ୍ରମପୁର୍ ପଗଳା ଗାରଦ
## ମୁର୍ଶିଦାବାଦ

—୧—

ବାସିନ୍ଦା ଖୟୁକ୍ତ ହିମାଂଶୁଶେଖର ଦାସ, ପିତା ଗୋପେଶ୍ୱର ଦାସ, ଜାତି କରଣ, ପେଷା "ପରମ୍ପରେ ନଡ଼ିଆ ଭାଙ୍ଗି ଖାଇବା", ଘର ବାଲେଶ୍ୱର ଜିଲ୍ଲା କୁଲଙ୍ଗି ଗ୍ରାମରେ । ଗାଁଟି ଅତି ଛୋଟିଆ ନୁହେଁ ।

ମଫସଲ ହେଲେ ମଧ୍ୟ ସହରର ଯାବତୀୟ ସୁବିଧାରେ ଭର୍ତ୍ତି । ପ୍ରଜାର ସୁଖ-ଶାନ୍ତି, ସ୍ୱାସ୍ଥ୍ୟ ଓ ଶିକ୍ଷା ଉପରେ ଉଦାରଚେତା ଜମିଦାର ପ୍ରତାପନାରାୟଣ ଭଞ୍ଜଙ୍କ ଦୃଷ୍ଟି ଚିରକାଳ ପ୍ରଖର ।

ଉପରିଆ ଦୁଇ ପଇସା ନେବାରେ ତାଙ୍କ ସଦର ତହସିଲଦାର ଗୋପେଶ୍ୱର ଦାସଙ୍କ ଭଳି ବିଚକ୍ଷଣ ବ୍ୟକ୍ତି ସେ ଅଞ୍ଚଳରେ ଅଉ କେହି ନ ଥିଲେ କହିଲେ ଚଳେ । ୧୫ । ୨୦ ଟଙ୍କାର ଚାକିରି କରି ଜମିବାଡ଼ି, ଘରଦ୍ୱାର, ଟଙ୍କାକଉଡ଼ି ସେ ଯାହା ସଞ୍ଚି ଦେଇଥିଲେ, ସୁଧାଂଶୁ ଓ ହିମାଂଶୁ ଦୁଇ ପୁଅ କିଛି ନ କରି କେବଳ ସେଗୁଡ଼ାକୁ ଖେଳାଇ ବୁଲାଇ ପାରିଥିଲେ ଖାଇବା ଅଭାବଟା କଣ, ଜୀବନରେ ଜମା ଜାଣିପାରନ୍ତେ ନାହିଁ; ପାଞ୍ଚଦଶ ଧାରଉଧାର ଦିଅନ୍ତେ ପଛକେ, କାହାରିଠାରେ ହାତ ପାତିବାକୁ ପଡ଼ନ୍ତା ନାହିଁ । ଅର୍ଥସଞ୍ଚୟ ସଙ୍ଗେ ସଙ୍ଗେ ପିଲା ଦୁଇଟିକୁ ମଣିଷ କରିବା ପାଇଁ ତାଙ୍କର ଯତ୍ନର ଅବଧି ନ ଥିଲା । ପିଲାମାନଙ୍କ ପାଇଁ ଅକାତରରେ ବ୍ୟୟ ମଧ୍ୟ କରୁଥିଲେ ସେ । ପୋଥିପତ୍ର, ମାଷ୍ଟରପଣ୍ଡିତ କୌଣସି କଥାର ଊଣା ନାହିଁ । ସ୍ୱୟଂ ହେଡମାଷ୍ଟର ମହୋଦୟ ପିଲା ଦୁଇଟିର ଗୃହଶିକ୍ଷକ ଥିଲେ ।

ପିଲା ଦୁଇଟି ମଧ୍ୟ ଭାରି ବୁଦ୍ଧିମାନ୍ । ବାର୍ଷିକ ପରୀକ୍ଷାରେ ସେମାନଙ୍କ ପାଇଁ ସର୍ବୋଚ୍ଚ ସ୍ଥାନ ବରାବର ଥୁଆ ହୋଇ ରହିଥାଏ । ସୁଧାଂଶୁ ଓ ହିମାଂଶୁ ବେଶି କିଛି ସାନବଡ଼ ନୁହନ୍ତି, ଦୁଇଟି ବର୍ଷର ତଫାତ୍ ମାତ୍ର । ମା ଛେଉଣ୍ଡିଆ ପିଲା ଦୁଇଟି, ପରସ୍ପର ପରସ୍ପରକୁ ପ୍ରାଣରୁ ଅଧିକ ଭଲପାନ୍ତି । ସେମାନଙ୍କୁ ସ୍କୁଲପିଲାଏ କହନ୍ତି 'Das brothers'; ଗାଁଲୋକେ କହନ୍ତି 'ରାମଲକ୍ଷ୍ମଣ' । ଦଣ୍ଡେଦଣ୍ଡେ କେହି କାହାରିକୁ ଛାଡ଼ି ରହିପାରନ୍ତି ନାହିଁ । ସେମାନେ ତ କେବଳ ଭାଇ ଭାଇ ନ ଥିଲେ—ଭାଇ, ବନ୍ଧୁ, ସଖା, ସଚିବ, ସହୋଦର ସବୁ । ତେଣୁ ପ୍ରବେଶିକା ପରୀକ୍ଷାରେ ପ୍ରଥମ ବିଭାଗରେ ଉତ୍ତୀର୍ଣ୍ଣ ହୋଇ ମଧ୍ୟ ସୁଧାଂଶୁ ଅନ୍ୟାନ୍ୟ ପିଲାଙ୍କ ପରି ପ୍ରାଣମନ ଖୋଲି ଖୁସି ହୋଇପାରିଲା ନାହିଁ, କେବଳ ସାନଭାଇ ହିମାଂଶୁର କଥା ଭାବି । ତାକୁ ଛାଡ଼ି ଯେ କଲେଜ ଯିବାକୁ ପଡ଼ିବ । ଏକୁଟିଆ ବଡ଼ କଷ୍ଟ ହେବ ତାର ।

ବଡ଼ଭାଇକି ଛାଡ଼ିବା ବ୍ୟଥାଟା ହିମାଂଶୁର ବୁକୁରେ ମଧ୍ୟ କମ ଆଘାତ କରି ନ ଥିଲା; କିନ୍ତୁ ବିଚରା କରିବ କଣ ? ତାକୁ ଯେ ବାଧ୍ୟ ହୋଇ ଅନ୍ତର

ବର୍ଷେକାଳ ଗାଁ ସ୍କୁଲରେ ପଢ଼ିବାକୁ ହେବ । ନୂତନ ହେଡ୍‌ମାଷ୍ଟର ବହ୍ନାଶ୍ରି ବାବୁ ସେ ସମୟରେ ଆସି ନ ଥିଲେ ଏ ବେଦନା ହିମାଂଶୁର ଅସହ୍ୟ ହୋଇପଡ଼ିଥାନ୍ତା । ହୁଏ ତ ଆସନ୍ତା ବର୍ଷ ସେ ପରୀକ୍ଷାରେ ସଫଳକାମ ହୋଇଥାନ୍ତା କି ନାହିଁ, ସନ୍ଦେହ । ସପରିବାର ବହ୍ନାଶ୍ରି ବାବୁଙ୍କୁ ପାଇ କେଇଟା ଦିନ ସେ ଅନେକ ପରିମାଣରେ ସମ୍ଭାଳି ନେଲା ।

ବହ୍ନାଶ୍ରି ବାବୁ ନବ୍ୟତନ୍ତ୍ର ଲୋକ । ଆୟୁଠାରୁ ବ୍ୟସ୍ତଟା ତାଙ୍କର ଢେର ବେଶି; ତେଣୁ ଅଭାବ-ଅଭିଯୋଗସବୁ ଲୋକ ଆଖିରୁ ଲୁଚାଇବା ପାଇଁ ଖର ସଚେଷ୍ଟ ସେ । ଗୋପେଶ୍ୱର ବାବୁଙ୍କ ସନିର୍ବନ୍ଧ ଅନୁରୋଧରେ ମଧ୍ୟ, ପୂର୍ବ ହେଡ୍‌ମାଷ୍ଟରଙ୍କ ପରି ଘରକୁ ଯାଇ ହିମାଂଶୁକୁ ପଢ଼ାଇବା ପାଇଁ ସେ ସ୍ୱୀକୃତ ହେଲେ ନାହିଁ; ମାତ୍ର ସେ ଯଦି ତାଙ୍କ ଘରେ ଆସି ପଢ଼ିଯାଏ ଏବଂ ଉପଯୁକ୍ତ ପାରିଶ୍ରମିକ ମିଳେ, ସେଥିରେ ସେ ଗୋଟାଏ ସୁବିଧା କରିଦେଇ ପାରନ୍ତି ।

ସୁଧାଂଶୁକୁ ଛାଡ଼ି ଘରେ ରହିବା ପାଇଁ ହିମାଂଶୁର ଜମା ମନ ବଳୁ ନ ଥାଏ; ତେଣୁ ହେଡ୍‌ମାଷ୍ଟର ମହାଶୟଙ୍କ ପ୍ରସ୍ତାବରେ ସେ ତତ୍‌କ୍ଷଣାତ ରାଜି ହୋଇ କହିବାରୁ ପିତାଙ୍କୁ ମଧ୍ୟ ରାଜି କରାଇଲା । ଅଳ୍ପ ଦିନ ମଧ୍ୟରେ ହିମାଂଶୁ ବହ୍ନାଶ୍ରି ବାବୁଙ୍କ ଅଭିମାନୀ ମନକୁ ଅତି ସହଜରେ ଜୟ କରି ପକାଇଲା । କରିବ ନାହିଁ କାହିଁ ? ଏବେ ତ ସେ ପାଠଶାଠରେ ଅତି ଭଲ, ତା ଭଳି ତୀକ୍ଷ୍ଣବୁଦ୍ଧିଆ ପିଲା ସେ ଅଞ୍ଚଳରେ ନ ଥିଲେ କହିଲେ ଚଳେ । ତା ଉପରେ ପୁଣି ବହ୍ନାଶ୍ରି ବାବୁଙ୍କ ଘର ପଢ଼ୁଆ ପିଲା ସେ । ବେତନ ଉପରେ ପର୍ବପର୍ବାଣିରେ ଗୋପେଶ୍ୱର ବାବୁ ଯାହା ଉପହାର ଦିଅନ୍ତି, କାମ କରି ହିସାବ କଲେ ତାହା ଶହେ ଦେଢ଼ଶହ ଟଙ୍କାରୁ କମ୍ ନୁହେଁ । ଅଧିକନ୍ତୁ ସମୟ ଅସମୟରେ ୧୦ । ୨୫ ଧାରକରଜ ମଧ୍ୟ ମିଳେ । ଏସବୁ ଛଡ଼ା, ମା-ଛେଉଣ୍ଡିଆ ପିଲା ଜାଣି ଶିକ୍ଷକ-ଗୃହିଣୀ ଆନନ୍ଦମୟୀ ମଧ୍ୟ ତାକୁ ବଡ଼ ଆପଣାର କରି ନେଇଥିଲେ । ହିମାଂଶୁ ମଧ୍ୟ 'ଖୁଡ଼ୀମା' 'ଖୁଡ଼ୀମା' ଡାକି ଆନନ୍ଦରେ ଅଧୀର ।

ଏଥିରେ ସୁଦ୍ଧା ସୁଧାଂଶୁର ଅଭାବଟା ସେ ଭୁଲିପାରି ନ ଥାନ୍ତା । ଖାଁ ଖାଁ ହେଉଥିବା ବୁକୁଟା ତାର ସମ୍ପୂର୍ଣ୍ଣ କରନ୍ତି କେବଳ କୁନ୍ଦକୁମାରୀ— ବହ୍ନାଶ୍ରି ବାବୁଙ୍କ ଏକମାତ୍ର ଗେହ୍ଲା ଝିଅ । ବିଦେଶକୁ ଆସି ସେ ମଧ୍ୟ ପ୍ରଥମେ

ପ୍ରଥମେ ଦିନାକେତେ ବଡ଼ ମନମରା ହୋଇ ପଡ଼ିଥିଲା । ହଠାତ୍ ହିମାଂଶୁ ଦାଦାକୁ ପାଇ ସେ ଅକୂଳରେ କୂଳ ପାଇଗଲା । ବସା ତ ଗାଁପ୍ରାନ୍ତରେ ସ୍କୁଲହତା ଭିତରେ । ପାଖରେ କାହାର ଘରଦ୍ୱାର ନାହିଁ ଯେ କୁନ୍ଦ ମିଳାମିଶା କରିବାର ସାଥୀ ପାଇବ । ବାପମାଙ୍କ ସଙ୍ଗରେ ରହି ଦିନ କାଟେ ; ସୁତରାଂ ଦୁହେଁ ଦୁହିଁଙ୍କି ପାଇ ସାଥୀହରାର ତୀବ୍ର ଦାହନରୁ ବର୍ତ୍ତିଗଲେ । ମୋଟ ଉପରେ ବିହାରୀ ବାବୁଙ୍କ ପରିବାରଭୁକ୍ତ ହେବାକୁ ହିମାଂଶୁର ବେଶି ଡେରି ହେଲା ନାହିଁ ।

ଗଛ ଚଢ଼ିବା, ପଚୀର ଡେଇଁବା, ନଈ ପହଁରିବା, ଏସବୁ ବିଷୟରେ ମଧ୍ୟ ହିମାଂଶୁର ସମକକ୍ଷ ପିଲା ଖୁବ୍ କମ ଥିଲେ । କେଉଁ ଗଛରେ କେଉଁ ସମୟରେ କେଉଁ ଚଢ଼େଇର ଛୁଆ ମିଳେ, କାହା ବଗିଚାରେ କେଉଁ ଗଛରେ ସ୍ୱାଦୁ ଫଳ ଅଛି, କାହା ବଗିଚାରେ କି ଫୁଲ ଫୁଟେ, ଏ ସବୁ ତାର ନଖ-ଦର୍ପଣରେ । ସକାଳସନ୍ଧ୍ୟା ପଢ଼ିବାକୁ ଆସିବାବେଳେ ସେ କେବେ ହେଲେ ଖାଲି ହାତରେ ଅସେ ନାହିଁ ; ଗୋଟାଏ ନା ଗୋଟାଏ କିଛି କୁନ୍ଦପାଇଁ ନେଇ ଆସିଥାଏ । ଅନନ୍ତମୟୀ କିଛି କହିଲେ କହେ, 'ଏସବୁ ତ ପଇସା ଦେଇ ଖରିଦ କରି ନାହିଁ, ଖୁଡ଼ୀମା, ଅମୁକ ମୋର ସଙ୍ଗସାଥୀ—ତାଙ୍କ-ଠାରୁ ନେଇଆସିଲି । ଗାଁକୁ ନୂଆ କିଛି ଖେଳନା ଅସିଲେ ଆଗ କରି କିଣିବ ହିମାଂଶୁ କୁନ୍ଦପାଇଁ । ତାର ଯେତେ ମୂଲ ହେଉ ପଛକେ, ପଇସାର ତ ଅଭାବ ନାହିଁ ତାର !

ହିଂସୁକ ପିଲାମାନଙ୍କ ମଧ୍ୟରେ ଏସବୁ କଥା ଅତିରଞ୍ଜିତ ହୋଇ ପ୍ରକାଶ ହୋଇପଡ଼ିଲା ଦିନଠାରୁ ପରୋକ୍ଷରେ ସେ ନାମ ପାଇଲା 'କୁଅଁରି ବାବୁ' । ଏ କଥା କିନ୍ତୁ ତାର କାନକୁ ଯାଏ ନାହିଁ । ସେ ଦିନ ସେ ଗୋଟିଏ ଟିଣର କୁରସି ଧରି ବିହାରୀ ବାବୁଙ୍କ ଘରକୁ ଅସୁଛି କୁନ୍ଦକୁ ଅବାକ୍ କରିଦେବ ବୋଲି । ଗୁଡ଼ି ଦେଲେ କୁରସିଟି ବଡ଼ କରୁଣ ସ୍ୱରରେ ଗାଇ ଗାଇ ଧାଇଁ-ଯାଏ । ଏଟା କିଣିବାର ମୁଖ୍ୟ ଉଦ୍ଦେଶ୍ୟ ତାର—କୁନ୍ଦକୁ ଖୁସି କରିବା । ଆଜି ସକାଳେ କୁନ୍ଦ ଅନୁବାଦ କରିବାକୁ ଯାଇ କଣ କମିତି ଗୋଟାଏ ଭୁଲ କରି ବସିଲା ଯେ, ହିମାଂଶୁ ନ ହସି ଜମା ରହିପାରିଲା ନାହିଁ । ଠୋ ଠୋ ହସି ଉଠିବାରୁ ବହିପତ୍ର ଫୋପାଡ଼ି ଦେଇ କୁନ୍ଦ ଧାଇଁ ପଳାଇଗଲା ;

ବାର ବାର ଡାକି ମଧ୍ୟ ତାକୁ ଫେରାଇ ପାରନ୍ତି ନାହିଁ ସେ । ହିମାଂଶୁ ଜାଣେ, କୃନ୍ଦ କେଡ଼େ ଅଭିମାନିନୀ । ୧୧।୧୨ ବର୍ଷ ବୟସ ହେଲେ ମଧ୍ୟ କଣ ହେବ, ପିଲାବୁଦ୍ଧି ଛଡ଼ା ଯାଇ ନାହିଁ ତାର । ହୁଏ ତ ଏଥିପାଇଁ ଦୁଇ ଚାରି ଦିନ କଥାଭାଷା ମଧ୍ୟ ବନ୍ଦ କରିଦେବ ସେ । ଦୁଇଚାରି ଥର ଇମିତି ଘଟିଯାଇଛି କି ନା ! ଅନେକ ସାଧ୍ୟସାଧନା କରି ଭୁଲାଇବାକୁ ପଡ଼େ ତାକୁ । ତେଣୁ ଅନେକ ଖୋଜାଖୋଜି କରି ନୂଆ ଆମଦାନୀ ଚୂଡ଼ି ଖେଳନା କିଣି, ପଢିବାକୁ ଆସୁଥିବା ବେଳେ ଗାଁଶେଷର ପଡ଼ିଆ ପାଖରେ ତା ପଛରୁ କିଏ ଡ଼ାକିଲା, "ହିମାଂଶୁ ।"

ହିମାଂଶୁ ଫେରି ଦେଖେ, ସୁରେନ୍ଦ୍ର ଓ ନଟବର । ହିମାଂଶୁ ଛିଡ଼ା ହେଲା । ସୁରେନ୍ଦ୍ର ପାଖକୁ ଆସି ପଚାରିଲା, "ବେଳ ନ ବୁଡ଼ୁଣୁ କିମ୍ପାଇଁ ନେଇ ଚାଲିଛୁ ଯେ ! ତୁ ଦେଖୁଛି, ଏ ବର୍ଷ Com pete ନ କରି ଛାଡ଼ିବୁ ନାହିଁ ।"

"ବେଳ ନ ବୁଡ଼ୁଣୁ ଯାଉଛି ବୋଲି ଏଯଣି ପଢିବାକୁ ବସିବ ନା କଣ କରୁଛି ?"

"ତେବେ ଯେ ଏତେ ତରତର ହୋଇ ଧାଇଁଛୁ ?"

"ତର ତର କାହିଁ ? ଯେମିତି ସବୁଦିନେ ଯାଏ—ଯାଉଛି ।"

ନଟବର କହିଲା, "ଅରେ, ତରତର ହେବାର କାରଣ ଅଛି !"

ସୁରେନ୍ଦ୍ର ମୁରକି ହସି କହିଲା, "କାରଣ ?"

"କାରଣ ? ରାତରାତ ହେଲାଣି ବେଳ, ଏତେ ବେଳଯାଏ ଘରକୁ ନ ଗଲେ ଭାବିବେ ଯେ ସମସ୍ତେ—"

"ହିମାଂଶୁର ଘର ଏଥିଜେ ହେଲାଣି କେବେଠାରୁ ? ପୃଥିବୀଟା ଓଲଟି ଗଲା ନା କଣ ?"

ହିମାଂଶୁ ଗମ୍ଭୀର ହୋଇ କହିଲା, "କଣ ?"

"ଆରେ ଖାଲି 'ଭାବୀ'ଟାଏ ଯୋଡ଼ି ଦେଲେ ହେଲା । ଆଉ କଣ ?"

"ନନ୍‌ସେନ୍‌ସ୍ ।"

"ଆରେ, ସେନ୍‌ସ୍ ଅଛି ବୋଲି କହିଲ ନା, ନ ଥିଲେ କହିପାରନ୍ତ ? ତୁ କଣ ଭାବୁ, ଆମେ କିଛି ଜାଣୁ ନାହିଁ ? ଫିସ୍‌ଫାସ୍ କଥା, ଦିହକୁ ଦିହ

ଲଗାଇ ବସିବା, ହସାହସି, ଥଟ୍ଟାତାମସା, କେତେ ରଙ୍ଗ ଲାଗିଛି ଆଜି-
କାଲି ନା !"

"ମିଥ୍ୟାବାଦୀ !"

"ଧର୍ମପୁତ୍ର ଯୁଧିଷ୍ଠିର, ପାଠ ପଢିବାକୁ ଯାଇ ଇମିତି ପଢାଇ ଦେବୁ
ଯେ, ସାତଜନ୍ମ ମାଷ୍ଟରଙ୍କର ଧୋଇଲେ ପୋଛିଲେ ସରିବ ନାହିଁ ।"

"ମୁହଁ ସମ୍ଭାଳି କଥା କହିବ !"

"ନିଜକୁ ସମ୍ଭାଳ ଆଗେ—"

ହିମାଂଶୁ ଏତେ ବେଳଯାଏ ରାଗରେ ଗରଗର ହେଉଥିଲା; କିନ୍ତୁ ଏ
କଥା ଶୁଣି ଆଉ ସମ୍ଭାଳି ନ ପାରି ନଟବରର ଗାଲରେ ଚଟ୍‌କିନା ଚାପୁଡ଼ାଟାଏ
ବସାଇଦେଲା । ନଟବର ଓ ରାଜେନ୍ଦ୍ର ଦୁହେଁଯାକ ପ୍ରସ୍ତୁତ ହୋଇ ଆସିଥିଲେ ।
ସେମାନେ ଦୁଇଜଣ ହେଲେ ହେବ କଣ ? ଜିମ୍‌ନାଷ୍ଟିକ୍ player
ହିମାଂଶୁ ସଙ୍ଗରେ ସେ ପାରିବେ କୁଆଡୁ ? ଦୁଇଜଣଙ୍କୁ ଏକାଠି କିଲ ଧଧା,
ଗୋଇଠା, ଚାପୁଡ଼ା ବେଶ କରି କସି ଦେଲା ସେ ! ସେହିଦିନ କିନ୍ତୁ ବହାଶ୍ୱ
ବାବୁଙ୍କ ଘରେ ପହଞ୍ଚି ମନଟା ତାର କଣ ଗୋଟାଏ ପୁଲକମୟ କଳ୍ପନାରେ
ଅକାରଣରେ ଆପେ ଆପେ ଶିହରି ଉଠିଲା । ଯଦି କେବେ ସତ୍ୟ ହୁଏ !
ନା, ନା !! ଛି, ଛି—ଲଜ୍ଜାରେ ମୁହଁ ତାର ଆପେ ଆପେ ଲାଲ ହୋଇଉଠିଲା ।

ଏହି କଥାଟିକୁ ଭାବିବ ନାହିଁ ବୋଲି ବାର ବାର ମନେ ମନେ
ପ୍ରତିଜ୍ଞା କଲେ ମଧ୍ୟ ଅଜ୍ଞାତରେ ତାର କେତେବେଳେ ଯେ ସେହି କଥାଟିକୁ
ମୋହନ ରଙ୍ଗରେ ରଞ୍ଜିତ ହୋଇ ଫୁଟିଉଠେ, ହିମାଂଶୁ ଲକ୍ଷ୍ୟ ପାଏ ନାହିଁ
ତାର । ଦିନ ଦିନ ଇମିତି କରି ତାର ଗୋପନ ପ୍ରାଣରେ କଥାଟାର
ପ୍ରତିଷ୍ଠା ହେଲା । ସଙ୍ଗେ ସଙ୍ଗେ ହିମାଂଶୁ ପ୍ରାଣ ଢାଳି ନିଜକୁ ଯୋଗ୍ୟ କରିବା
ପାଇଁ ଲାଗିପଡିଲା । ଜାଣେ ସେ କୁନ୍ଦର ଦୁଇମାମୁ ଓକିଲ, ଦଦା ପୁଅ
ଭାଇ ଜଣେ ବିଲାତଫେରନ୍ତା ଡାକ୍ତର, ମଉସା ସିଭିଲ ଜଜ୍ । ଉଚ୍ଚଶିକ୍ଷିତ
ନ ହେଲେ ଯେ ଏମାନଙ୍କଠାରେ ତାର ଠାବ ନାହିଁ, ହିମାଂଶୁ ତାହା
ଭଲରୂପେ ବୁଝିଥିଲା ।

କୁନ୍ଦକୁ ପାଇବା ପାଇଁ ସେହି ଦିନଠାରୁ ଆରମ୍ଭ ହେଲା ତାର କଠୋର
ସାଧନା । ଆଶା ତାର ନିଜକୁ ଯୋଗ୍ୟ ନ କରି......---ଏ କଥା

ତାହାଙ୍କୁ କେବେ ଜାଣିବାକୁ ଦେବ ନାହିଁ ସେ । ତାର ଭବିଷ୍ୟତ୍-ପଥରେ ଉଜ୍ଜ୍ୱଳ ଧ୍ରୁବତାରା ପରି ଝଲସିବ ଅଲକ୍ଷ୍ୟରେ ଫୁଟି ରହିଲା କୁନ୍ଦକୁମାରୀ—ରାତିଦିନ—ଦିନରାତି !

—୨—

ପ୍ରବେଶିକା ପରୀକ୍ଷାରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିବା ଖବରଟା ପାଇ ହିମାଂଶୁଶେଖର ଯେତେ ଆନନ୍ଦିତ ହେଉ ନା କାହିଁକି, ତାଠୁଁ ବେଶି ଆନନ୍ଦିତ ହେଲେ ଜମିଦାର ପ୍ରତାପନାରାୟଣ । ବହୁଦିନରୁ ମନରେ ତାଙ୍କର ଗୋଟାଏ ଗଭୀର ଆକ୍ଷେପ ଥିଲା ଯେ, ତାଙ୍କ ସ୍କୁଲରୁ କେହି କେବେ ହେଲେ ଗୋଟାଏ ବୃତ୍ତି ପାଇଲେ ନାହିଁ । ଏତେ କାଳର ପୁରୁଣା ସ୍କୁଲ ତାଙ୍କର ; ଅଥଚ ତାଙ୍କରି ପିତାଙ୍କ ଅମଳରେ ସାମାନ୍ୟ କେନ୍ଦୁପତ୍ର ବ୍ୟବସାୟୀ ଅନୁଗୃହୀତ ଜୀବ ଗୋବର୍ଦ୍ଧନ ପରିଡ଼ା ହଠାତ୍ କିଛି ପଇସା ପାଇ କେଉଁଟିଆ ଜମିଦାର ଖଣ୍ଡେ ବଣି, ତାଙ୍କରି ସଙ୍ଗରେ ତାଲ ଦେବାପାଇଁ ପ୍ରସାଦପୁରରେ ଯେଉଁ ସ୍କୁଲ ବସାଇଲା, ସେଥିରୁ ୪।୫ ଜଣ ପିଲା ୧୦।୧୫ ଟଙ୍କା ଲେଖାଏଁ ଜଳପାଣି ପାଇଗଲେଣି । ଏହା କଣ କମ୍ ଅପମାନର କଥା ? ଏ ଦୁଃଖ କାହାରିକି କହିବାର ନୁହେଁ; ଅଥଚ ପ୍ରାଣରେ ଗୋଟାଏ ଜାଳ ଅଶାନ୍ତ ! ସ୍କୁଲ ପାଇଁ ସେ କରି ନାହାନ୍ତି କଣ ? ଅକାତରରେ ଟଙ୍କା-ପଇସା ଖରଚ କରୁଅଛନ୍ତି, ଭଲ ଭଲ ମାଷ୍ଟରପଣ୍ଡିତ ରଖିଅଛନ୍ତି । ତେବେ ମଧ୍ୟ ତାଙ୍କ ସ୍କୁଲର ନାମ ନାହିଁ । ଏତେ ଦିନ ପରେ ଆଜି ତାଙ୍କ ମାନ ରଖିଛି ତାଙ୍କରି ତହସିଲଦାର ପୁଅ ହିମାଂଶୁ ଦାସ । ସମ୍ବାଦ ପାଇବା ମାତ୍ରକେ ଡ଼କାଇ ଆଣି ପାଟର ଧୋତିଗୁଡ଼ର, ଗୋଟିଏ ସୁନା ମୁଦ ଦେଇ ହିମାଂଶୁକୁ ସମ୍ମାନିତ କଲେ ସେ । ଉଦ୍ଦେଶ୍ୟ, କଥାଟା ଲୋକମୁହଁରେ ଯେପରି ଗୋବର୍ଦ୍ଧନର କାନକୁ ଯାଏ ।

ଜମିଦାରର ଏ ସମ୍ମାନ ପାଇ ହିମାଂଶୁ ଧାଇଁଲା ଖୁଡ଼ୀମା ପାଖକୁ । ସେମାନଙ୍କ ଯୋଗୁ ସିନା ଆଜି ଏ ସମ୍ମାନ ଲାଭ । ବହାରି ବାବୁଙ୍କ ସଦର ଦୁଆରେ ପହଞ୍ଚିବା ମାତ୍ରକେ ହିମାଂଶୁର ଛାତିଟା ଫୁଲି ଉଠିଲା ଦୁଇଗୁଣ । ମନରେ ପଡ଼ିଲା ତାର, ଆଜି ସେ ଯେଉଁ ସମ୍ମାନ ଲାଭ କରିଛି, କୁନ୍ଦର

ମାଷ୍ଟର, ଭାଇର, ମଜ୍ଦୁର—ଇମିତି କ ହେଡ୍‌ମାଷ୍ଟରଙ୍କ କପାଳରେ ମଧ୍ୟ କେବେହେଁ ତାହା ଘଟି ନ ଥିବ । ଏ ଅଞ୍ଚଳରେ ଏହା ତ ସ୍ୱପ୍ନାତୀତ—ଆଶାତୀତ ! ଜୁନ ମାସର ମଧ୍ୟାହ୍ନଟା ଖରାରେ ହିମାଂଶୁର ଆସିବା ଦେଖି କୁନ୍ଦ ପଚାରିଲା, "ଏତେ ଖରାରେ ଯେ ?"

"ସାର୍ କାହାନ୍ତି ?"

"କାହିଁ ?"

"ଆମ ପରୀକ୍ଷାର ଫଳ ବାହାରିଛି । ବଡ଼ଭାଇଙ୍କ କଲେଜର ଜଣେ ପ୍ରଫେସର୍ ଟେଲିଗ୍ରାମ କରିଅଛନ୍ତି—ମୁଁ ଇଉନିଭରସିଟିରେ ଫାଷ୍ଟ କରିଛି ।"

କୁନ୍ଦ ଉତ୍‌ଫୁଲ୍ଲ ହୋଇ ପିତାଙ୍କୁ ଖବର ଦେବାପାଇଁ ଧାଇଁ ଯାଉଥିଲା, ହିମାଂଶୁ ଡାକିଲା, "କୁନ୍ଦ" !

କୁନ୍ଦ ଛିଡ଼ା ହୋଇ ପଚାରିଲା, "କଣ ?"

"ତୁମକୁ ଗୋଟିଏ କଥା କହିବି, ରଖିବ ?"

"କଥାଟା ନ ଶୁଣି ?"

"ମୁଁ ଯେ ତମକୁ ଅନ୍ୟାୟ ଅନୁରୋଧ କିଛି କରି ନ ପାରେ, ଏହା ତ ଅନ୍ତତଃ ବିଶ୍ୱାସ କର ?"

"କରେ ଶହେବାର ।"

"ତେବେ ?"

"କଥାଟା କଣ ?"

"ରଖିବ ତ ?"

"ହଁ ।"

"ଏଇ ମୁଦିଟି ଧର, ତମେ ପିନ୍ଧିବ ।"

"ଏଥିପାଇଁ ଏତେ ଭୂମିକା ? ମୁଁ ସବୁବେଳେ ପିନ୍ଧିବି । ଗୋଟାଏ କାହିଁକି, ଦଶଟା ଦିଅନା । ତେବେ ତମକୁ ମଧ୍ୟ ମୋର ଗୋଟିଏ କଥା ରଖିବାକୁ ପଡ଼ିବ । ତମେ ହଠାତ୍ ମାଙ୍କୁ ଏ ଖବର ଦେଇପାରିବ ନାହିଁ ।"

ହିମାଂଶୁ ସ୍ୱୀକୃତ ହୋଇ ବୃନ୍ଦ ପଛେ ପଛେ ଅନ୍ଦରକୁ ଯାଇ ପର୍ଦ୍ଦାର ଆଢ଼ୁଆଳରେ ଛିଡ଼ାହୋଇ ରହିଲା । ବିହାରୀ ବାବୁ ତେତେବେଳ ଯାଏ ଦବାଖାନାରୁ ଉଠି ନାହାନ୍ତି । ଆନନ୍ଦମୟୀ ବାରନ୍ଦାରେ ବସି ମସଲା ବାଟୁ ଥିଲେ । ବୃନ୍ଦ ଯାଇ ମୁଦିଟି ଦେଖାଇ କହିଲା, "ମା, ଏଡା ।"

ଆନନ୍ଦମୟୀ ଆଶ୍ଚର୍ଯ୍ୟ ହୋଇ କହିଲେ, "ସୁନାମୁଦିଟାଏ ଯେ ! ବେଶ୍ ଦାମୀ ବୋଲି ମନେ ହେଉଛି, ଦେଖି !"

ବୃନ୍ଦ ଅଙ୍ଗୁଠି ବଢ଼ାଇ ଦେଲା । ଆନନ୍ଦମୟୀ ପଚାରିଲେ, "କୋଉଠୁ ଆଣିଲୁ ?"

"ମୁଁ ପାଇଛି ।"

"କେଉଁଠାରୁ ପାଇଲୁ ?"

"ବାରନ୍ଦାରୁ ।"

"ହିଁ, ବାରନ୍ଦାରେ ଖାଲି ସୁନାମୁଦିଗୁଡ଼ା ବିଛା ହୋଇଛି , ନା! ଆଉ କଣ ?"

"ସତେ ମା, ବାରନ୍ଦାରୁ ପାଇଛି ।"

"ହଉ ଲୋ, ମତେ କଣ ଟୋକୀଟିଏ ପାଇଲୁ ନା ?"

"ବିଶ୍ୱାସ ନ କଲେ କରିବ କଣ କହ ? ଅଚ୍ଛା, ଦେଖିବ ଏ ମୁଦିଟା ମୁଁ ବରବର ହାତରେ ପିନ୍ଧିବି କି ନା ।"

"ତେବେ ଏହା ସେହି ପାଗଳା ହିମାଂଶୁର କାଣ୍ଡ ।"

"ସେ ସୁନା ମୁଦି ପାଇବେ କାହୁଁ ?"

ହିମାଂଶୁ ଆସି ମୁଣ୍ଡ ନୁଆଁଇ ପ୍ରଣାମ କରିବାର ଦେଖି ଆନନ୍ଦମୟୀ ଅଶ୍ଚର୍ଯ୍ୟ ହୋଇ ପଚାରିଲେ, "ଇଏ କଣରେ ବାପ ?"

ହିମାଂଶୁ ହସି ହସି କହିଲା, "ମୁଁ . କିଛି କହିପାରିବି ନାହିଁ ଖୁଡ଼ୀମା, ବୃନ୍ଦର ମନା ଅଛି ।"

"ଆଉ ପାଗଳଙ୍କ ଦଳରେ ପଡଛି ମୁଁ ! ହଉ ଲୋ କଥାଟା କଣ ?"

ବୃନ୍ଦ ହସି ହସି କହିଲା, "ଭାରି ସୁଖବର ମା । ହିମାଂଶୁ ଦାଦା ଇଉନିଭରସିଟିରେ ଫାଷ୍ଟ କରିଛନ୍ତି ।"

"ସତେ ନା କଣ ?"

ହିମାଂଶୁ କହିଲା, "ହଁ ।"

"ବଡ଼ ଅନନ୍ଦିତ ହେଲି ବାପ, ଦୀର୍ଘଜୀବୀ ହୁଅ ! ଏହି ମୁଦିଟି ତମର ନା ?"

"ନା, ସୁନ୍ଦର ।"

"ସୁନ୍ଦର; କିନ୍ତୁ କାହୁଁ ପାଇଲ ସେ ?"

"ଭାଗ ପାଇଛି । ଜମିଦାର ଏହିକ୍ଷଣି ଡ଼କେଇ ପାଞ୍ଚ ଯୋଡ଼େ ଅଙ୍ଗ ଏହି ମୁଦିଟି ମୋତେ ଦେଇଛନ୍ତି ।"

"ଭଲ କଥା; କିନ୍ତୁ ତମେ ଏ ମୁଦିଟି ପାଗଳୀକୁ ଦେଲ କାହିଁ ?"

"ମୁଁ କଣ କରିବି ଖୁଡ଼ୀମା ! ମୋ ହାତରେ ତ ଗୋଟାଏ ରହିଛି । ତା ପରେ ଏଇଟି ମୋ ହାତରେ ମଧ୍ୟ ଠିକ୍ ହେଉ ନାହିଁ; କେଉଁଠି ପଡ଼ି ହଜିଯିବ ।"

"ଆଉ ସୁନ୍ଦ ଯତ୍ନ କରି ରଖିଥିବ ?"

"ନ ହେଲେ ତାହାର ଯିବ; ମୋର କଣ ?"

"ଏତେବେଳ ଯାଏ ତମ କୁମ୍ଭକର୍ଣ୍ଣ କକେଇର ନିଦ ଭାଙ୍ଗି ନାହିଁ ! ଯା ନା ସୁନ୍ଦ, ଉଠାଇ ଦେ ।"

"ବାପା ଅସୁର ନୁହନ୍ତି—ମଣିଷ; ସୁତରାଂ ଉଠାଇବା ଦରକାର ହେବ ନାହିଁ ।"

"ଠିକ୍ କହିଛୁ ମା" କହି ବଡ଼ାବାବୁ ହସି ହସି ବାହାରି ପଡ଼ିଲେ । ହିମାଂଶୁର ସମ୍ବାଦ ପାଇ ଅନନ୍ଦର ସୀମା ନାହିଁ ତାଙ୍କର । ଏଥର ହୁଏ ତ ବେତନଟା ୨୫।୩୦ ଟଙ୍କା ବଢ଼ିଯିବ ନିଶ୍ଚୟ ।

ହିମାଂଶୁ ବହୁକାଳ ଧରି ବଡ଼ାବାବୁଙ୍କ ପରିବାରରେ ଅତି ବେଶି ମିଳାମିଶା କଲେ ମଧ୍ୟ ବଡ଼ାବାବୁ ନିଜେ କେବେ ନିଜ ଗାମ୍ଭୀର୍ଯ୍ୟର ବିନ୍ଦୁମାତ୍ର ହ୍ରାସ ହେବାକୁ ଦେଇ ନାହାନ୍ତି । ବରାବର ଗୁରୁଶିଷ୍ୟ ପରି ବ୍ୟବହାର କରିଆସିଛନ୍ତି ସେ । ଆଜି ତାଙ୍କର ସେ କୈତକ ଗାମ୍ଭୀର୍ଯ୍ୟର ଆବରଣ ଖସିପଡ଼ିଲା । ଚା ଖାଇବାକୁ ବସି ହିମାଂଶୁକୁ ଟେବୁଲ ପାଖକୁ ଡାକିଲେ ଅଜି ପ୍ରଥମ । ହିମାଂଶୁ କିନ୍ତୁ ସହଜରେ ସେଥିରେ ରାଜି ହେଉ ନାହିଁ ଦେଖି କହିଲେ,—"ଆରେ ଏଥିରେ ଦୋଷ କଣ ? ସୁନ୍ଦ ଯେ ବରା-ବର ମୋ ସାଙ୍ଗରେ ବସି ଖାଏ ।" ହାତ ଧରି ଟାଣି ଗୋଟାଏ ଚେୟାରରେ

ବସାଇଦେଲେ । ହିମାଂଶୁର ଗୋପନ ମନ କହି ଉଠିଲା, "ମୋର ଆଶା ହେବେ ନିତାନ୍ତ ଦୁରାଶା ନୁହେଁ—ହୁଏ ତ, ହୁଏ ତ ଦିନେ ସଫଳ ହେବ ।" ବୃନ୍ଦ ଅଙ୍ଗକୁ ଅନାଇ ଅକାରଣରେ ଅପେ ଅପେ ହିମାଂଶୁର ଗୋଲାପୀ ମୁହଁରେ ସ୍ୱେଦକଣା ଫୁଟି ଉଠିଲା ।

ତାର ସେ କଣାର ଫୁଙ୍କ କଟିଲା ଘରକୁ ଆସି ବାପା ଯେତେବେଳେ ପଚାରିଲେ, "କାହିଁରେ ଜମିଦାରଙ୍କଠାରୁ ପାଠ, ମୃଦ ସବୁ ପାଇଲୁ ସିନା, ଦେଖେଁ । ନାଇବ ବାବୁ ଆସିଛନ୍ତି; ତାଙ୍କୁ ଥରେ ଦେଖାଇ ଆଣେ ।"

ହିମାଂଶୁ ପାଠଯୋଡ଼ାଟା କାଢ଼ି ଦେଲା । ଗୋପେଶ୍ୱର ବାବୁ କହିଲେ, "ମୃଦଟା ?"

"ବୃନ୍ଦକୁ ଦେଇ ଆସିଲି ।"

"ହାଇ ରେ, ଶରଧା ଭରା ଜମିଦାର ତୋତେ ଦେଲେ; ଆଉ ତୁ ସେଟା ଦିନେ ସୁଦ୍ଧା ବ୍ୟବହାର କଲୁ ନାହିଁ ? କେତେ ତପସ୍ୟା ଥିଲେ ରାଜା, ମହାରାଜା, ଜମିଦାର—ଏମାନଙ୍କଠାରୁ ଜିନିଷ ମିଳେ ଜାଣୁନା ? ସେ ସବୁ ଜିନିଷ ଲୋକେ ସାତପୁରୁଷ ଯୋଗାଇ ରଖିଥାନ୍ତି, ଭବିଷ୍ୟତ ବଂଶଧରମାନେ ଦେଖିବେ ବୋଲି; ଆଉ ତୁ ସେଟା ଅକ୍ଳେଶରେ ପରକୁ ଦେଇ ଆସିଲୁ ?"

ପର ? କିପରି ବୁଝାଇବ ଯେ, ବୃନ୍ଦ ତାର କିଏ—ବୃନ୍ଦ ତାର କିଏ ? ତାହା ପାଇଁ ଆଜି ଏ ସାଫଲ୍ୟ—ଏ ବିପୁଳ ବିଜୟ-ଗର୍ବ ? ତେଣୁ ସିନା ସେ ତାର ବିଜୟିନୀର ହାତରେ ଦେଇଆସିଲା ତାର ଅଭିଜ୍ଞାନ ।



ପୂଜାର ବନ୍ଦ । ବୋର୍ଡିଂ ପିଲାଏ ସେ ଯାହାର ଘରକୁ ଚାଲିଯାଇଛନ୍ତି । କେହି କୌଣସି ଆଡ଼େ ନାହାଁନ୍ତି । ସଦର ବାରନ୍ଦାରେ ବସି ବୃନ୍ଦ ନିଜ ମନରେ ଗୁଣୁ ଗୁଣୁ କରି ଗୀତ ଗାଇ ଗାଇ "Forget me not" ଲେଖାର ଅସମାପ୍ତ କାର୍ପେଟ ଦେହରେ କେତୋଟି ଫୁଲ ଆଙ୍କୁଥିଲା । ଝରି ଶେଫାଳିର ମ୍ଳାନ-ମଧୁର ଗନ୍ଧ ବହି ଶରତର ଉତଳା ପବନଟି ବୃନ୍ଦର ଭ୍ରମରକଳା କୁନ୍ତଳ ମଝିରେ ବସା ବାନ୍ଧିବାକୁ ଘୂରି ବୁଲୁଥିଲା । ପଛ ପଟରୁ ନିଃଶବ୍ଦରେ

ହିମାଂଶୁ ଅସି କାପେଟ ଦେଖି କହିଲା, "ଚମତ୍କାର !" ବୃଦ୍ଧ ଚମକି ପଡ଼ି ପଛକୁ ଗୃହିଁ, ନମସ୍କାର କରି କହିଲେ, "କେତେବେଳେ ଆସିଲେ ?"

"କାଲି ସନ୍ଧ । Sir ଅଛନ୍ତି ?"

"ମା ଲୋ ! ସେ ଏତେବେଳେ ଘରେ ରହିବେ ? ହୁଇଲ ଧରି କେଉଁ ସକାଳୁ ଧାଇଁଛନ୍ତି ନା !"

"ଫେରିବେ କେତେବେଳେ ?"

"ଘଣ୍ଟାଏ ଅଧଘଣ୍ଟାଏ ଭିତରେ । ବାଃ ରେ, ଛିଡ଼ାହୋଇ ରହିଲ ଯେ, ବସ ନା !"

"ଖୁଡ଼ୀମା ସଙ୍ଗରେ ଆଗ ଦେଖାଟା କରିଅସେଁ" କହି ହିମାଂଶୁ ଭିତରକୁ ଯାଉଁ ଯାଉଁ ମଝିବାଟରେ ଶୁଣିଲା, ସେ ବାଥ୍‌ରୁମରୁ କାହାଣି ନାହାନ୍ତି । ହିମାଂଶୁ ଗୃହର ଭିତରରୁ "ପେକେଟଟିଏ" କାଢ଼ି ଟେବଲ ଉପରେ ଥୋଇଦେଇ ନୂଆ ଅର୍ଗେନଟିରେ ହାତ ଦେଇ ଦୋକାନର ନାମ ଦେଖୁଥିଲାବେଳେ ବୃଦ୍ଧ ଘରକୁ ପଶି ହସି ହସି କହିଲା—"ଏହା "Geometryର ଇନ୍‌ଷ୍ଟ୍ରୁମେଣ୍ଟ ନୁହେଁ କିନ୍ତୁ ।"

"Geometry ର ନୁହେଁ, ଇନ୍‌ଷ୍ଟ୍ରୁମେଣ୍ଟ ତ ।"

"ଇନ୍‌ଷ୍ଟ୍ରୁମେଣ୍ଟ ନିଶ୍ଚୟ; କିନ୍ତୁ ଇନ୍‌ଷ୍ଟ୍ରୁମେଣ୍ଟ ହେଲେ ଯେ ହାତ ଚଳିବ, ଇମିତି କଣ କଥା ଅଛି ?"

"ନିଶ୍ଚୟ ଅଛି; ଅଜ୍ଞ ଆମର ଚଳ ବା ନ ଚଳୁ, ତମର ତ ଚଳେ !"

"ଇନ୍‌ଷ୍ଟ୍ରୁମେଣ୍ଟଟି ଯେତେବେଳେ ମୋର, ସେତେବେଳେ ହାତ ଯେ ନିଶ୍ଚୟ ଚଳେ, ଏଥିରେ ବିନ୍ଦୁମାତ୍ର ସନ୍ଦେହ ରହିପାରେ ନାହିଁ ।"

"ତମର ହେଲା ବୋଲି କଣ ହାତ ଚଳିବ ନାହିଁ ? ଯାଅ ଦେଖିବ, କେତେ କେତେ ଧନୀଘରେ ଚମତ୍କାର କାଠର କାଚବନ୍ଧା ଆଲମାରିରେ ବିଶ୍ୱବିଖ୍ୟାତ କେତେ କେତେ ଲେଖକମାନଙ୍କ ଅମୂଲ୍ୟ ବହିସବୁ ସଜା ହୋଇ ରହିଛି । ନୂଆ ଚକଚକିଆ—ଦିନେ ହେଲେ କେଉଁ କେହି କେବେ ସେଠାରେ ହାତ ଦିଅନ୍ତି ନାହିଁ ।"

"ସେମାନେ ଯାହା କରିବେ ତାହାହିଁ କରିବାକୁ ହେବ ନା କଣ ?"

"ନିଶ୍ଚୟ । ସେମାନେ ସମାଜର ଅଦର୍ଶ, ଜାତିର ଗୁରୁ, ଦେଶର କର୍ତ୍ତା !"

"ଯେଉଁ ସମାଜର ଆଦର୍ଶ ସେମାନେ, ହୁଏ ତ ମୁଁ ସେ ସମାଜ-ଭୁକ୍ତ ନୁହେଁ ।"

"ବେଶ—ପ୍ରମାଣ କର", କହି ହିମାଂଶୁ ଅର୍ଗେନ ପାଖର ଚେୟାରଟି ବୃଦ୍ଧ ଆଡ଼କୁ ଘୁଞ୍ଚାଇ ଦେଲା ।

"ଆଗେ ଶୁଣେ, ତା ପରେ ଖାଇବି ।"

"ଅତିଥି ଦେବତା ! ଅଗ ସତ୍କାର ପାଇ ପରେ ବର ଦିଅନ୍ତି ।

"ତମେ ତ ଅତିଥି ନୁହଁ !"

"ଅଭ୍ୟାଗତ ନିଶ୍ଚୟ ।"

"ଏଠାରେ ଯେ ତମେ ଚିର ସୁସ୍ୱାଗତ !"

"ଗୁରୁ ଦୁଷ୍ଟ ବୃଦ୍ଧ !"

ଆନନ୍ଦମୟୀ ହସି ହସି ଆସି ପଚାରିଲେ, "କିଏ ଦୁଷ୍ଟ, କିଏ ଶିଷ୍ଟ ?"

ଗୋଡ଼ତଳେ ମୁଣ୍ଡ ଲଗାଇ ପ୍ରଣାମ କରି ହିମାଂଶୁ କହିଲା, "ମୁଁ ଶିଷ୍ଟ ।"

ବୃଦ୍ଧ କହିଲା, "ଆଜି ବିଶ୍ୱମଧ୍ୟରେ ଏକା ଦୁଷ୍ଟ ମୁଁ ନା କଣ ?",

"ମୁଁ ତ କାହାରିକି ଦୁଷ୍ଟ କହୁ ନାହିଁ; ମୁଁ କହୁଛି କେବଳ—ମୁଁ ଶିଷ୍ଟ ।"

"ଆଚ୍ଛା, କିଏ ଶିଷ୍ଟ ଦେଖାଯିବ ଯେ-- ।"

ଆନନ୍ଦମୟୀ ହସି ହସି କହିଲେ, "କେତେ ଦିନ ପରେ ହିମାଂଶୁ ଆସିଛୁ, ଆଜି ଅସ୍ତୁ ଅସ୍ତୁ ସକାଳଠାରୁ ତୁ କଳକଳିଆ ଲଗାଇ ଦେଇଛୁ ।"

"ମୁଁ କଳକଳିଆ କରୁଛି ? ମା ତମେ ବଡ଼ ଏକଆଖିଆ ।"

"ହଉ," କହି ଆନନ୍ଦମୟୀ ହସି ଉଠିଲେ । ହିମାଂଶୁର ମୁଣ୍ଡରେ ହାତ ବୁଲାଇ ବୁଲାଇ କହିଲେ, "ବଡ଼ ରୋଗା ରୋଗା ମନେ ହେଉଛୁ ଯେ—ଦିହପା ସବୁ ଭଲ ଥିଲା ତ ?"

"ମୋ ଦିହପା କେବେ ଖରାପ ହୁଏ ନା ଖୁଡ଼ୀମା—ଏହି ଟ୍ରେନରେ ଆସିବା ପାଇଁ ଟିକିଏ କମିତ କମିତ ଦିଶୁଥିବ—ନ ହେଲେ କଟକ ଯାଇ ମୋର ସ୍ୱାସ୍ଥ୍ୟ ଢେର ଭଲ ହୋଇଛି—ଓଜନରେ ମୁଁ ପ୍ରାୟ ୨୪ ସେର ବଢ଼ିଛି ।"

"ହଉ ଥାଉ । ସୁଧାଂଶୁ ଆସିଲା ନାହିଁ ?"

"ନା, ତାଙ୍କ ପରୀକ୍ଷା ଯେ— ।"

"ଓଃ ! କନ୍ତୁ ଦୁଇ ଗୃହ ଦିନ ପାଇଁ ଆସିଥିଲେ ଆସି ପାରିଥାନ୍ତା ତ ! ଏସବୁଡ଼ା କଣ ?"

ଟେବୁଲରୁ ଛୁରୀ ନେଇ "ପେକେଟ" ଖୋଲୁଁ ଖୋଲୁଁ ହିମାଂଶୁ କହିଲା, "କେତେସବୁଡ଼ା ନୂଆ ଉପନ୍ୟାସ—ଖୁବ ସୁନ୍ଦର ଖୁଡ଼ୀମା ।" ପେକେଟରୁ ବାହାରିଲା ଦଶଟି ଉପନ୍ୟାସ, ଦୁଇଟି ପେରିସର ଏସେନ୍ସ, ଦୁଇଟି ହେଜଲିନ୍ ସ୍ନୋ, ଡବାଏ ପାଉଡର ଓ ଗୋଟିଏ ସୋପ ।

ଅନନ୍ଦମୟୀ କହିଲେ, "ଏସବୁଡ଼ା ବନ୍ଧୁର ଉପହାର ନା ପ୍ରଫେସର-ମାନଙ୍କର ପୁରସ୍କାର ?"

"କିଣି ଆଣିଲି ଖୁଡ଼ୀମା, ଦାମ୍ ବେଶି ନୁହେଁ—ମୋର ଏକ ମାସର Scholarship ରୁ କମ୍ ।"

"ତା ହେଉ, କନ୍ତୁ ଅନର୍ଥକ ପଇସା ନଷ୍ଟ ।"

"ଅନର୍ଥକ ? ଆଚ୍ଛା, ଖୁଡ଼ୀ ମା, ସତ କହି କହିଲେ ପ୍ରତି ମାସରେ କୁନ୍ଦ ପାଇଁ ପାଉଡ଼ର, ହେଜଲିନ୍ ଆଉ ସେଣ୍ଟରେ କେତେ ଖରଚ ହୁଏ ?"

"ମୁଁ ତମମାନଙ୍କ ସଙ୍ଗରେ ତର୍କ କରିପାରୁ ନାହିଁ ବାପା—ଯା ମନକୁ ଯିବ, ତାହା ତ କରିବ; ବୃଥା ମନା କରି ଲାଭ କଣ ହେବ ?"

"ବାସ୍—ଏହାହିଁ ତ ସୁନା ଝିଅର କଥା !"

"କୁନ୍ଦ, ଏତେସବୁଡ଼ା ଉପହାର ପାଇ ତୁ ଏତେ ବେଳଯାଏ ଗାରିବ ? ଏଟା ବଡ଼ ଅଶୋଭନ ଦିଶୁଛି କନ୍ତୁ ! ନେ ନେ, ଶୀଘ୍ର ଅର୍ଗେନଟାରେ ବସି ପଞ୍ଚ ସ୍ୱରରେ ତୋର ହିମାଂଶୁ ଦାଦାକୁ କୃତଜ୍ଞତା ଜଣା ।"

"ସେଥିପାଇଁ ତ କଲକଣ୍ଠିଆ, ତମେ ଅସି ସବୁ ଗୋଳମାଳ କରି ଦେଇ ।"

"ମୁଁ ଗଣ୍ଡଗୋଳ କରିଦେଲି ? ମାନେ ତମ ଗଣ୍ଡଗୋଳଟା ବଢ଼ି-ବାକୁ ସୁବିଧା ଦେଲି ନାହିଁ, ଏହା ହିଁ ତ ?

"ଯଦି ଓଦ କଲି, ତେବେ ପୁଣି ଆରମ୍ଭ କଲି କିଆଁ ? ମୁଁ ତ ତାଙ୍କୁ କହୁଛି, ହିମାଂଶୁ ଦାଦା ଆଗ ଗାଇଲେ ମୁଁ ପରେ ଗାଇବି ।"

"ହିମାଂଶୁକୁ ଗାଇ ଅସେ ?"

"ନିଶ୍ଚୟ, ଏହିକ୍ଷଣି ମୋଠାରେ ସ୍ୱୀକାର କରିଛନ୍ତି ।"

"ବେଶ୍, ତେବେ ହିମାଂଶୁର ଆରମ୍ଭ ହେଉ ।"

"ଶୁଣାଯାଉ, ସବୁଲୋକଠାରୁ କେବଳ କଥା କହାଇବା ଭଲ ଲାଗୁ ନାହିଁ" କହି ସେ ଗୋଟିଏ ଚେୟାର ଟାଣି ନେଇ ବସି ପଡ଼ିଲେ । ବୃଦ୍ଧ ହିମାଂଶୁର ହାତ ଧରି ଅର୍ଗେନ ପାଖରେ ବସାଇଦେଲେ । ଦୁଇ ତିନି ଥର ଅର୍ଗେନରେ ଅଙ୍ଗୁଳି ଖେଳାଇ ହିମାଂଶୁ ଗାଇଲା—

"ଜଡ଼ଚଲା ମୋ ମନେ
କ୍ଷଣେ କ୍ଷଣେ ପୁଲକ ଜାଗେ ଆଜ ଅକାରଣେ ।
ଦଗେ ଦଗେ ଗନ୍ଧଭରା
ଅସେ ପବନ ପାଗଳ—କରା
ମର୍ମର ତାନ ବଣେ ବଣେ କହ କାହାର ଆଗମନେ ?"

ବାଃ, ବାଃ, ଚମତ୍କାର ଗଳା—ବନ୍ଦ କଲ କାହିଁକି ହିମାଂଶୁ ? ଗାଅ ଗାଅ" କହି ବହାଗି ବାବୁ ଆସି ଗୋଟିଏ ଚେୟାର ଅଧିକାର କରି ବସିପଡ଼ିଲେ । ହିମାଂଶୁ ଗାଇଲା—

"ଶୁଭ୍ର, ମେଘର ରଥେ
ଫୁଲ-ବିଛା ବନପଥେ,
ଅସେ ଶ୍ୟାମ ଅଞ୍ଚଳ ବିଛାଇ ଭୁବନେ ବିଛାଇ ତରୁଣ-ଜୀବନେ ।"

"ସୁନ୍ଦର ! ସୁନ୍ଦର ! ଚମତ୍କାର । ହିମାଂଶୁ, ଏତେ ସୁନ୍ଦର ଗାଇ ପାର ତମେ ? କାହିଁ ମୁଁ ତ କେବେ ହେଲେ ଶୁଣି ନାହିଁ ।"

"ଆଗେ ତ ଗାଇ ପାରୁ ନଥିଲି Sir, ଅଳ୍ପ ଦିନ ହେଲା ଶିଖୁଛି ପରା ।"

"ଖୁବ୍ ଭଲ—ସଙ୍ଗୀତ ଶିକ୍ଷାର ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ ।"

"ଶିଖିବାକୁ ସମୟ ମିଳେ ନାହିଁ Sir ! ପ୍ରତି ରବିବାରରେ ଦୁଇ ଘଣ୍ଟା ମାତ୍ର ।"

"ଯଥେଷ୍ଟ, କାହାଠାରୁ ଶିଖୁଛ ?"

"ଆମର କଲେଜର 5th. year ର ଜଣେ Studentଠାରୁ । ବାସ୍ତବିକ Sir, ଲଳିତ ବାବୁଙ୍କ ଗଳା ପରି ମିଠା ଗଳା ମୁଁ କେବେ ଶୁଣି ନାହିଁ— ।"

"ଲଳିତ ?"

"ଲଳିତ ମହାନ୍ତି !"

"ନରହରିପୁରର ?"

"ଆପଣ ଚିହ୍ନନ୍ତି Sir ?"

"ଚିହ୍ନେ ନାହିଁ, ତେବେ ତମ କଲେଜର ଛାତ୍ର ବୋଲି ଶୁଣିଛି । କେମିତି ପିଲା ସେ ?"

"ଯେତେ ଦୂର ଭଲ ହେବାର କଥା —ଅମାୟିକ ସ୍ୱଭାବ, ଗର୍ବ, ଅହଙ୍କାରର ଲେଶ ମାତ୍ର ନାହିଁ; ଅଥଚ ବେଶ୍ ଅବସ୍ଥାପନ୍ନ ଲୋକ ସେମାନେ—ଗୃହର ଚାକର, ପାଚକ ବ୍ରାହ୍ମଣ ନେଇ ପୃଥକ୍ ବସା କରି ଥାନ୍ତି ସେ—ଲଳିତ ବାବୁ ଛଡ଼ା ସଭା ସମିତି ନାହିଁ । ଗୋଟିଏ ଅଧି- ବେଶନରେ ତାଙ୍କ ଗୀତ ଶୁଣି ପିଛା ନେଇ—ଜାଣିଲି, ସେ ଆମର କଲେଜ ପିଲା । ପ୍ରତି ରବିବାର ଯାଇ ତାଙ୍କ ପାଖରେ ମୁଁ ଗାନ ଶିଖିଲେ ତାଙ୍କର କିଛି ଅସୁବିଧା ହେବ କି ନାହିଁ ପଚାରିବାରୁ ହସି ହସି ମୋ ପିଠିରେ ଗୋଟିଏ ଚାପୁଡ଼ା ମାରି କହିଲେ—"କବିତା, ଚବିତା ଲେଖିବା ଅଭ୍ୟାସ ଅଛି ?"

କହିଲି, "ହଁ—ନା, ସେମିତି କିଛି—"

"ନିଶ୍ଚୟ ଥିବ, ନୋହିଲେ ଏଡ଼େ ପରିମାର୍ଜିତ ବିନୟୀ ଭାଷା ବାହାରିବ କେମିତି ? ଭଲ କଥା, ତମେ ଏଥର ଆମ କଲେଜ ମେଗାଜିନରେ ଲେଖିବାକୁ ଆରମ୍ଭ କର—ମୁଁ ମଧ୍ୟ ଗୀତ ଶିଖାଇବାକୁ ଆରମ୍ଭ କରିଦେବି । ତମେ ଯେତେବେଳେ ସୁବିଧା ପାଇବ, ମୋର ବସାକୁ ଯିବ; କୌଣସି ଆପତ୍ତି ନାହିଁ । ବଡ଼ ଭଦ୍ର ବ୍ୟବହାର ତାଙ୍କର Sir ।"

"ଭୁଦର ସାନମାନ୍ୟ ଭୁନ ସଙ୍ଗରେ ତାଙ୍କ ସମ୍ବନ୍ଧର ଚେଷ୍ଟା କରୁଛନ୍ତି ଯେ— ।"

ପଲକରେ ହିମାଂଶୁର ସବୁ ଉତ୍ସାହ ଲିଭିଗଲା—ଗ୍ରହଣଲଗା ଚନ୍ଦ୍ର ପରି ମୁହଁଟି ତାର ଦୂର ପାହାଡର ନୀଳ ଛବି ଆଡ଼େ ଅପଲକ ଆଖିରେ ଅନାଇ ରହିଲା—ତାର ଅବାଧ ଅଶ୍ରୁର ବନ୍ୟରେ ।

( ୪ )

ଦିନଯାକ ଖଟି ଖଟି ଗୁହଠା ବାଜୁ ବାଜୁ ହୋଷ୍ଟେଲ ପିଲାଏ ବାହାର ପଡ଼ିଲେ ଖେଳିବା ବୁଲିବା ପାଇଁ । ଆସନ୍ନ ପରୀକ୍ଷା ସତ୍ତ୍ୱେ ପିଲାମାନଙ୍କ ମଧ୍ୟରେ ଗୋଟାଏ ଚଞ୍ଚଳ ଉଦ୍‌ବେଗ ଦେଖାଗଲେ ମଧ୍ୟ ହିମାଂଶୁ ଦାସ କିନ୍ତୁ ନିର୍ବିକାର । ତାର ଯେପରି କିଛି କରିବାକୁ ନାହିଁ; ତେଣୁ ସେ ଅଳସ ଭଙ୍ଗୀରେ ଶୋଇ ଶୋଇ ଭାବୁଥିଲା—କାହା ପାଇଁ ଅଜ ବୃଥା ଏ ହାଡ଼ଭଙ୍ଗା ଖଟଣି ? କଣ ହେବ ଏଥିରେ ତାର; 'ପେଟ୍ରୋଲ' ଅଭାବରେ ମୋଟର ଯେମିତି ମଝିପଥରେ ହଠାତ୍ ଅଚଳ ହୋଇଯାଏ, ମନର ଖୋରାକ ନ ପାଇ ହିମାଂଶୁର ସବୁ ଉତ୍ସାହ, ସବୁ ଇଚ୍ଛା—ସିମିତି ବିକଳ ହୋଇ ପଡ଼ିଗଲା । ବେଳେ ବେଳେ ବୁଢ଼ୀଟା ତାର ହାଜ ହାଜ କର କଣ ପୋଡ଼ ଅଥୟ କରିଦିଏ ତାକୁ । କହିବ କହିବ କରି କହିବା ସାହସ କ ନ ହେଲା ତାର କେବେ । ବେଳ ଗଡ଼ିଗଲା ପ୍ରାୟ—ଗୃହିଁ ଦେଖେ, ଦୁନିଆ ଅନ୍ଧାର, ତା ପାଇଁ ଯେ ଚନ୍ଦ୍ରମାନ ଅଲୁଅ ନାହିଁ—ଅଲୁଅ କାହିଁ ରେ, ଅଲୁଅ କାହିଁ ?

ଅଥଚ ତାକୁ ହିଁ କରିବାକୁ ହେଲା ସବୁ—ଲୁଦର ବିବାହରେ ବରଯାତ୍ରୀର ଆଦର ଆପ୍ୟାୟନ, ଅଭାବ ଅଭିଯୋଗ ବୁଝିବା—ବିବାହ ପରେ ଲୁଦକୁ ନେଇ ଘରକୁ ଆସିବା, ସବୁ ଭାର ପଡ଼ିଲା ତାହାରି ଉପରେ । କିପରି କହିବ ସେ—'ମୁଁ ପାରିବି ନାହିଁ, ମୋତେ ଦୟା କର, କ୍ଷମା ଦିଅ ।' ତାର ଗୋପନ କଥା ଯଦି ଏଥିରେ ବନ୍ଧୁମାନେ ଫୁଟିଉଠେ, କିପରି ଲୁଚାଇବ ସେ ତାର ଅଯୋଗ୍ୟତାର ଦାରୁଣ ଲଜ୍ଜା । ଲଳିତ ରୂପରେ ନ ହେଉ, ଧନରେ, ମାନରେ, ଗୁଣରେ ତାଠାରୁ ଯେ ଢେର ଉପରେ । ତାହାର ପ୍ରତିଦ୍ୱନ୍ଦ୍ୱୀ ହୋଇ ସେ କଣ ଲୋକସମାଜରେ ଉପହାସାସ୍ପଦ ହେବ ? ଯୂପକାଷ୍ଠକୁ ବଳିଗଲା ଭଳି ସବୁ ସେ ବାଧ୍ୟ ହୋଇ ସମାଧାନ କଲା ଆନତ-ମସ୍ତକରେ ।

ଲଳିତ ସହିତ ବନ୍ଧୁତାଟା ଆହୁରି ଗଭୀର ହୋଇ ଫୁଟି ଉଠିଲା, ଲୁଦର ବିବାହ ପରେ । ଅଣ୍ଟାପାଣି ଆଖିରେ ମାରି ଥଟ୍ଟାତାମସା କରୁଛି, ଲୁଦକୁ

ଶଢ଼ାଇଛି—ସବୁ କରୁଛି ସେ; କିନ୍ତୁ ଇମିତି ଅବିନୟ କରୁ କରି ମନ ତାର ଶ୍ରାନ୍ତ କ୍ଳାନ୍ତ ହୋଇ ପଡ଼ିଲାଣି । ଏବେ ସେ ଅଚଳ ଅବଶ । ମନକୁ ବଞ୍ଚାଇ ରଖିବା ପାଇଁ ମାୟାମୟୀ କଳ୍ପନାର ଆଶ୍ରୟ ନେବାକୁ ବାଧ୍ୟ ହେଲା ସେ । କେତେ ଅସମ୍ଭବକୁ ସମ୍ଭବ କରି, କେତେ ଦେଶରେ, କେତେ ଦିଗରେ ଯେ ଧାଇଁଛି ସେ, ତାର ଆଶାର ପ୍ରଦୀପ ଜାଳି, ତାର କଳନା ନାହିଁ— । ଜାଣେ ସେ ଏହା ତାର ଅନ୍ୟାୟ, ଘୋର ଅନ୍ୟାୟ; ତଥାପି ସେ ନିରସ୍ତ ହୋଇ ପାରି ନାହିଁ ଯେ— । କଣ ହେବ ତାର ଏ ସବୁ ସାମାଜିକ ବିଧିବିଧାନରେ, କଣ ହେବ ଶୁଣି ନୈତିକ ବ୍ୟାଖ୍ୟାସବୁ ? ଏଥିରେ କଣ ତାର ଦାଉ ଦାଉ ଜଳା ବୁକୁରେ ଶାନ୍ତି ମିଳିବ ? ସେ ତ ସବୁ କରି ସାରିଛି, ମନକୁ ଶାସନ କରିଛି—ନିଜକୁ ଦଣ୍ଡ ଦେବାପାଇଁ କେତେ କୃଚ୍ଛ୍ର ସାଧନ କରିଛି, ଶତରୂପରେ ଶତବର୍ଷ; ତଥାପି କଣ ନିସ୍ତାର ପାଇଛି ସଜାଗ ସ୍ୱପ୍ନରୁ ? ବଞ୍ଚିରହିଛି ତ ସେ କେବଳ କଳ୍ପନାକୁ ଧରିବସି ସୁଖ-ସ୍ୱପ୍ନ ଗଢ଼ି—ଏହା ହିଁ ଯେ ତାର ସ୍ନେହହୀନ ଜୀବନର ଏକମାତ୍ର ସମ୍ବଳ । ଅଜିକୁ ୧୦।୧୨ ଦିନ ହେଲା ଲଳିତ ବାବୁଙ୍କ ସମ୍ବାଦ ନାହିଁ—ହଠାତ୍ ସେ କାହିଁକି ଯେ ଗଲେ, କେହି ଜାଣନ୍ତି ନାହିଁ । ୨।୩ ଟି ଚିଠି ଦେଇ ମଧ୍ୟ ଜବାବ ନାହିଁ, ପୂର୍ବେ ତ ଏପରି ହୋଇ ନାହିଁ କେବେ । ହେଲା କଣ, କୁନ୍ଦ ମଧ୍ୟ ନୀରବ । ବିବାହର ଅଳ୍ପ କେଇ ଦିନ ପରେ ହିମାଂଶୁବାବୁ ସସ୍ତ୍ରୀକ ଧର୍ମ ଆଚରଣ ପାଇଁ ତୀର୍ଥ-ଯାତ୍ରା କରିଅଛନ୍ତି । ତାଙ୍କଠାରୁ ଯେ କୌଣସି ସମ୍ବାଦ ମିଳିବ, ତାହାର କମା ସମ୍ଭାବନା ନାହିଁ । ହିମାଂଶୁ କରିବ କଣ ? କୁନ୍ଦ କଣ ଅସୁସ୍ଥ, ତା'ର କି କୌଣସି ବିପଦ ଘଟିଛି ? ଯଦି ସେପରି କିଛି ହୋଇଥାଏ—ହିମାଂଶୁର ଆଖି ଆଗରେ ଭାସି ଉଠିଲା ରୁଗ୍ଣା କୁନ୍ଦର ସହାୟହୀନ ଛବି—ବିଳାସୀ ଲଳିତର ତରୁଣ-ମନ ଖୋରାକ ନ ପାଇ ବିଦ୍ରୋହୀ ହୋଇ ଉଠି ବିମୁଖ ହୋଇ ପଡ଼ିଛି, କୁନ୍ଦ ଉପରେ । ଶୀତ ପ୍ରଭାତର ଶିଶିର-ଧୂଆ ଶୀର୍ଣ୍ଣ ଗୋଲାପ ପରି କୁନ୍ଦ ଦିନ କାଟୁଛି—ହିମାଂଶୁ ଅଥୟ ହୋଇଉଠିଲା । ଅଶୋଭନ କଳ୍ପନାର ହାତରୁ ମୁକ୍ତି ପାଇବା ପାଇଁ ରେକେଟରୁ ସାଠ୍ କିଏ ଟାଣିନେଇ ବାହାରି ପଡ଼ିଲା ସେ, ଉଦ୍ଦେଶ୍ୟହୀନ ଭାବରେ ଷ୍ଟେସନଆଡ଼କୁ । ପ୍ଲାଟ୍‌ଫର୍ମରେ ଇଆଡ଼େ ସେଆଡ଼େ ବୁଲୁ ବୁଲୁ ମନର ଗତି ଫେରିବା

ସଙ୍ଗେ ସଙ୍ଗେ ହୁସ୍‌ହୁସ୍ କରି ପେସେଞ୍ଜର ଆସିଗଲେ । ବେଳ ବୁଝିବାକୁ ଆଉ ଡେରି ନ ହି—କେତେ ଓହ୍ଲାଇଲେ, କେତେ ଉଠିଲେ—ହୋ, ହା, ହଟ୍ଟଗୋଳ । ପ୍ଲାଟଫର୍ମରେ ବୁଲୁ ବୁଲୁ ଗୋଟିଏ ତୃତୀୟ ଶ୍ରେଣୀର ଗାଡି ପାଖରେ ପହଞ୍ଚି ଦେଖେ, ଲଳିତ ଗୋଟିଏ ଲୋଟା ଧରି ଓହ୍ଲାଇ ଆସୁଛି ପାଣି ନେବା ପାଇଁ । ତୃତୀୟ ଶ୍ରେଣୀରେ ଲଳିତମାଧବ ! —ଏହା ଯେ ପୂର୍ବର ସୂର୍ଯ୍ୟ ପଶ୍ଚିମରେ ଉଇଁଲା ଭଳିଆ କଥା ! ବସ୍ତୁତଃରେ ହିମାଂଶୁ ସ୍ତବ୍ଧ ହୋଇ ରହିଲା । ଲଳିତ ଜୋର କରି ଟିକେ ଶୁଖିଲା ହସ ହସି କହିଲା—"ଆରେ ହିମାଂଶୁ ଦାଦା ଯେ, ଖବର କଣ ?"

ମୋ ଖବର ବିଶେଷ କିଛି ନୂଆ ନୁହେଁ; କିନ୍ତୁ ତୁମର ଖବର କଣ କହିଲ ? ହଠାତ୍ କାହାରିକି କିଛି ନ କହି ଚାଲିଗଲ—ଚିଠି ଲେଖି ଲେଖି ହଇରାଣ ହୋଇଗଲି, ଟଙ୍କେ ଜବାବ ମଧ୍ୟ ନାହିଁ । ବୁଢାକୁ ଲେଖିଲି, ସେ ସୁଦ୍ଧା ନୀରବ—ବ୍ୟାପାର କଣ ?"

"ଉଠ ଉଠ ଗାଡ଼ିକି ଉଠ, ମୁଁ ହାତମୁହଁ ଧୋଇ ଆସେ, ଏଠାରେ ପ୍ରାୟ ଅଧଘଣ୍ଟା ଗାଡ଼ି ଛିଡ଼ା ହେବ ତ ?"

"ହଁ," କହି ଗାଡ଼ିକୁ ଉଠି ହିମାଂଶୁ ଆତୁର ଅବାକ୍—ବୃଦ୍ଧ ବସିଛି ଗୋଟିଏ କୋଣରେ ମୁହଁ ପୋଛି—ହିମାଂଶୁ ଯାଇ ଲଳିତର ବିଛଣା ପାଖରେ ଛିଡ଼ା ହେଲା ଦେଖି ବୃଦ୍ଧ ହସି ନୀରବରେ ଗୋଟିଏ ନମସ୍କାର କଲା । ଏତେ ଦିନ ପରେ ଦେଖା—ଗୋଟିଏ ଶୁଖିଲା ନମସ୍କାରରେ ସବୁ ଶେଷ ହେଲା କି ? ଚଞ୍ଚଳା ବୃଦ୍ଧର ନୀରବତା ହିମାଂଶୁର ମନରେ ଯେ କି ଆଘାତ କଲା, ଅନ୍ୟ କେହି ବୁଝିବେ କଣ—ହିମାଂଶୁ ହୁଏ ତ ନିଜେ ସମ୍ୟକ୍ ବୁଝି ପାରି ନ ଥିଲା । ଲଳିତର ବିଛଣା ଉପରେ ବସି ପଡ଼ି କହିଲା, "ହଠାତ୍ Third classରେ ଭ୍ରମଣ ଯେ ?"

"ଗାନ୍ଧିଙ୍କର ଉପଦେଶ ଭୁଲିଗଲେଣି ନା କଣ ?"

"କେତେ ଦିନ ହେଲା ଶିଷ୍ୟତ୍ୱ ନେଲ ?"

"କର୍ତ୍ତ୍ରୀଙ୍କ ଇଚ୍ଛାରେ କିଛି ।"

"ଚିଠି ଲେଖି ଲେଖି ହଇରାଣ ହୋଇଗଲି, ଜବାବ ନାହିଁ କିଆଁ ?"

"ଚିଠି ପାଇଥିଲି ସତ; କିନ୍ତୁ ଉତ୍ତର ଦେବାକୁ ଜମା ବେଳ ପାଇଲି ନାହିଁ—କ୍ଷମା କରିବ ଭାଇ !"

"ଏବେ ଯାଉଛ କାହିଁ ?"

"କଲିକତା ପରା !"

"କେଉଁ ଦିନ ପାଇଁ ?"

"ସ୍ଥିରତା ନାହିଁ ।"

"ବସା ଠିକ୍ ହୋଇଛି କେଉଁଠି ?"

"ଆଗ ଯାଇ ଉଠିବୁ ନୀଳମାଧବ ବାବୁଙ୍କ ଘରେ । ସେଠାରେ ରହି ସୁବିଧାମତେ ଘରଟିଏ ଭଡ଼ା କରିବୁ ।"

"ଲଳିତ ବାବୁ କଣ ତେବେ ଏ ବର୍ଷ ପରୀକ୍ଷା ଦେବେ ନାହିଁ ?"

"ଆଉ ପରୀକ୍ଷା," କହି ଲଳିତ ଆସି ପାଣି ଢାଳଟି ବୃନ୍ଦ ହାତରେ ଧରାଇଦେଲା ।

ହିମାଂଶୁ ଅବାକ୍ ହୋଇ ପଚାରିଲା, "ବ୍ୟାପାର କଣ ଲଳିତ ବାବୁ—ସତେ ପରୀକ୍ଷା ଦେବେ ନାହିଁ ?"

"ଦେବାର ତ ଯଥେଷ୍ଟ ଇଚ୍ଛା ଅଛି, ଦେଖେ ଯଦି ସୁବିଧା ହୁଏ ।"

"ଇମିତି ଅସୁବିଧାଟା ଘଟିଲା କିମିତି ?"

"ଗ୍ରହଚକ୍ର ଭାଇ ! ଯଦି ଛୁଟି ମିଳେ, ଥରେ ଚେଷ୍ଟା କରି ଦେଖିବି ।"

"ଛୁଟି ?"

"ମୁଁ ଯେ ୫୬୦୯ ରେ Ast, Headmaster ହୋଇ କଲିକତା ଯାଉଛି ।"

"୫୬୦ଙ୍କାର ଗୃହସ୍ଥୀରେ ଲଳିତ ବାବୁ ! ତମର ମାସିକ ଖର୍ଚ୍ଚ ତହୁଁ ଯେ ଢେର ବେଶି ।"

"ସେ ଦିନ ଆଉ ନାହିଁରେ ଭାଇ ! ଆମ ଜମିଦାରୀ ନେଇ ପ୍ରିଭି କାଉନସିଲରେ ଗୋଟିଏ ବଡ଼ ମୋକଦ୍ଦମା ଚାଲିଥିଲା । ସେଥିରେ ହି ବାପା ସର୍ବସ୍ୱାନ୍ତ ହୋଇଗଲେ ; ମାତ୍ର ଲୋକର ଆଖିରେ ପ୍ରକୃତ ଅବସ୍ଥା ନ ଜଣାଇବା ପାଇଁ ପ୍ରାଣପଣ ଚେଷ୍ଟାରେ ଢାଙ୍କି ଘୋଡ଼ାଇ ହୋଇ ରଖି-ଥିଲେ ସେ । ମୁଁ ମଧ୍ୟ ଘର ଅବସ୍ଥା ଜାଣୁ ନ ଥିଲି ଭାଇ । ସେହି ମୋକଦ୍ଦମାଟି ହାରି ଯାଇ ମାତ୍ର ୩୦ ପ୍ରଜାସ୍ୱତ୍ୱ ଜମି ଭିନ୍ନ ସମ୍ବଳ ଆଉ କିଛି ରହିଲା ନାହିଁ । ବାଧ୍ୟ ହୋଇ ସମ୍ବାଦପତ୍ରରେ ବିଜ୍ଞାପନ ଖୋଜି ବସିଲି ।

ଗାଁରେ ରହିବାକୁ ଜମା ମନ ବଳିଲା ନାହିଁ । ତାପରେ ପୁଣି ପେଟ ଅଛି ତ ? ନୀଳମାଧବର ବାପାଙ୍କ ଅନୁଗ୍ରହରେ ଟ୬୦୯ର ଗୃହଶିକ୍ଷକଟିଏ ଯୋଗାଡ଼ କରି ଘରୁ ବାହାରି ପଡ଼ିଛି । ଏକା ଛାଡ଼ିବାକୁ ବାପା ଆଦୌ ରାଜି ହେଲେ ନାହିଁ । ତେଣୁ ସସ୍ତ୍ରୀକ ଯାତ୍ରା । ନୂଆ କରି ଜୀବନ-ଯାତ୍ରା ଆରମ୍ଭ କରିବାକୁ ପଡ଼ିବ ଭାଇ—ସମ୍ପୂର୍ଣ୍ଣ ଅଚିହ୍ନା ଅଜଣା ପଥରେ ।"

ଠଣ୍ ଠଣ୍ କରି ଗାଡ଼ି ଛାଡ଼ିବା ଘଣ୍ଟା ବାଜିଲା ଉଠିଲା । ହିମାଂଶୁ ନମସ୍କାର କରି କହିଲା, "ଚିଠି ଦେବେ ଲଳିତ ବାବୁ !"

"ନିଶ୍ଚୟ ।"

କାମପାଇଁଟିର ଝଞ୍ଜଟରେ ଲଳିତ ବାବୁଙ୍କର ହୁଏ ତ ଚିଠି ଲେଖି-ବାକୁ ସୁବିଧା ଘଟି ନ ପାରେ; କିନ୍ତୁ ବନ୍ଧୁ, ତମର ଅବସରର ତ ଅଭାବ ନ ଥିବ— ଲଳିତ ବାବୁ ଚିଠି ଦେବାକୁ ଡେରି କରିବ ନାହିଁ । ତମ ଠିକଣା ନ ପାଇଲେ ମୁଁ ତ ଲେଖି ପାରିବି ନାହିଁ ।"

ମୁଣ୍ଡ ହଲେଇ ବନ୍ଧୁ ସମ୍ମତି ଜଣାଇଲା । ହିମାଂଶୁ ଓହ୍ଲାଇପଡ଼ିବା ମାତ୍ରକେ ଗାଡ଼ି ଷ୍ଟେସନ ଛାଡ଼ି ଧାଇଁଲା ତା ଗନ୍ତବ୍ୟ ପଥରେ ।

ହିମାଂଶୁ ପ୍ଲାଟଫର୍ମରେ ପଡ଼ିଥିବା ବେଞ୍ଚ ଉପରେ ବସି ପଡ଼ିଲା—ଠିକ୍ ଯେପରି ସର୍ବହରା-ପଙ୍ଗୁ । ଭାବିବାର ଶକ୍ତି ନ ଥିଲା ବୋଲି ଛିନ୍ନ ଭିନ୍ନ ଚିନ୍ତାର ଧାରାଗୁଡ଼ିକ ଏତେ ଜଟିଳ ହୋଇଉଠିଲା ଯେ, ନିରାଶ-ବ୍ୟୂହ ଭେଦ କେହି ଜମା ବାହାରି ପାରିଲେ ନାହିଁ ।

ଏବେ କଣ କରିବ ସେ ? ଭାବି ଭାବି ରାତି ଦଶଟା ବାଜିଗଲାଣି— ହିମାଂଶୁର ଉଠିବାର ନାମ ନାହିଁ । ରାତି ଦୁଇଟା ପୂର୍ବେ ଆଉ ଗାଡ଼ି ନାହିଁ । ଷ୍ଟେସନ-ଚହଲ କ୍ରମେ ନୀରବ ହୋଇଆସିଲା । କେବଳ ଷ୍ଟେସନ ମାଷ୍ଟରଙ୍କ ଅଫିସରୁ ଟିଂ ଟାଂ ଶବ୍ଦ ମଝିରେ ମଝିରେ ଶୁଣାଯାଉଛି; କିନ୍ତୁ ହିମାଂଶୁର କାନକୁ କିଛି ପଶୁ ନାହିଁ । ହଠାତ୍ ମନରେ ପଡ଼ିଲା—ଲଳିତ ଯଦି ଆଜି ବର୍ଷେ ଖଣ୍ଡେ ବିବାହ କରି ନ ଥାନ୍ତା, ତେବେ ତ ସେ ଜମିଦାରୀର ଜୁଲମରେ ସୁନ୍ଦର ଏ ଜୀବନଟା ତାର ବ୍ୟର୍ଥ କରି ପାରି ନ ଥାନ୍ତା କେବେ । ସେ ତ ଜାଣୁଥିଲା, ତା ମୁଣ୍ଡ ଉପରେ ଅନିଶ୍ଚିତ ସୌଭାଗ୍ୟ କେମିତି ଦୋଳି ଖେଳୁଛି, କେତେବେଳେ ଯଦି ଛିଡ଼ି ପଡ଼େ—ତେବେ ଯେ ତାକୁ ପଥରେ

ବସିବାକୁ ହେବ —ଏହା ଜାଣିଶୁଣି ସେ ଟିକଏ ଅପେକ୍ଷା କରି ପାରିଲା ନାହିଁ? ସେ ସବୁକଥା ପ୍ରକାଶ କରିଥିଲେ ବହାସ୍ମି ବାବୁ କଣ ଏତେ ଚଞ୍ଚଳ ଜବାବ ଦେଇଥାନ୍ତେ ? ଶୟତାନବୁଦ୍ଧିରେ ସେ ଜବ୍ଦ କରିଛି, ତାର ଜୀବନ-ଦେବୀକୁ । ଆଣିବ ସେ ଯେମିତ ମାରୁ ବୃନ୍ଦକୁ ତାର—ଫେରାଇ ଆଣିବ—କାଲୁ—

"ହିମାଂଶୁ, ତୁ ଏଠାରେ ?"

ହିମାଂଶୁ ଚମକି ପଛକୁ ଚାହିଁ ଦେଖେ, ସୁଧାଂଶୁ ୩।୪ ଜଣ ପିଲାଙ୍କୁ ସାଙ୍ଗରେ ନେଇ ଛିଡ଼ା— ।

ସୁଧାଂଶୁ କହିଲା, "ତୋତେ ଅପେକ୍ଷା କରି କରି ହଇରାଣ ହୋଇ ଖୋଜିବାକୁ ବାହାରିଛୁ --ଚାଲ ଚାଲ, ହୋଷ୍ଟେଲକୁ ଚାଲ ।"

"ଯାଇ କଣ ହେବ ?"

"ମାନେ ?"

"ଭଲ ଲାଗୁ ନାହିଁ ।"

"ଭଲ ଲାଗୁ ନାହିଁ କଣ ରେ—ପରୀକ୍ଷା ଆସି ପଡ଼ିଲାଣି ଯେ ।"

"ଆସୁ ।"

"ଏ କଣ କଥା ?"

"ମୁଁ ପାରିବି ନାହିଁ ।"

"ପାରିବୁ ନାହିଁ ? ଆଶ୍ଚର୍ଯ୍ୟ କଲୁ ତୁ, ଆଚ୍ଛା, ହୋଷ୍ଟେଲକୁ ଆଗ ଚାଲ —ପରେ ଦେଖାଯିବ ।"

ଆଜିକି କେତେ ଦିନ ହେଲା ହିମାଂଶୁକୁ ଦେଖିଦେଖି ସତୀର୍ଥ ପିଲାମାନେ ବାସ୍ତବିକ ଆଶ୍ଚର୍ଯ୍ୟ ହୋଇ ଯାଇଛନ୍ତି । ମୁଣ୍ଡ ଉପରେ ପରୀକ୍ଷା, ଅଥଚ ହିମାଂଶୁ ଆଦୌ ପଢ଼ିବାକୁ ବସୁ ନାହିଁ । ସେମାନେ ତ ଜାଣନ୍ତି ନାହିଁ, କି ଦାରୁଣ ଜ୍ୱାଳା ଛାତିରେ ଜଳୁଛି ତାର—ଅହରହ ରାବଣର ଚିତା ପରି ଦାଉ ଦାଉ—ଧାଉ ଧାଉ !

ହିମାଂଶୁ ଗୋଟିଏ ଛାତିଫଟା ଦୀର୍ଘଶ୍ୱାସ ଛାଡ଼ି ଉଠିଲା—ସୁଧାଂଶୁର କଥା ଟାଳି ନ ପାରି । ମନେ ମନେ ସ୍ଥିର କରି ରଖିଲା, ବୃନ୍ଦକୁ ଫେରି ପାଇବାର ଏହା ହିଁ ପ୍ରଶସ୍ତ ସମୟ । କଣ ହେବ ତାର ନାମ ପଛରେ ଲାଙ୍ଗୁଡ଼

ଖଞ୍ଜି ; ବଡ଼ ଜୋର ୫୦ କି ୬୦ ଟଙ୍କା ମାସକୁ ମିଳିବ । ଟଙ୍କାରେ ଅବଶ୍ୟ ଲୋଡ଼ା ତାର; କିନ୍ତୁ ୫।୬୫ ରେ ନୁହେଁ—ହଜାର ଦୁଇ ହଜାରରେ ନୁହେଁ—ଏ ଯୁଦ୍ଧର ଅଭିଯାନ ପାଇଁ ଅନ୍ତତଃ ଲକ୍ଷେ ଦି ଲକ୍ଷ ଟଙ୍କାର ଏକାନ୍ତ ପ୍ରୟୋଜନ । ଜୀବନ ଦେଇ ଯେଉଁଠୁ ପାଇ, ଯେମିତି କରି ପାଇ, ଆମରଣ ଚେଷ୍ଟା କରିବ ସେ । ହୁଏ ତ ଏହା ତାର ଅନ୍ୟାୟ ଦାବୀ । ଅନ୍ୟାୟ ? ନା, ନା, ଜମା ନୁହେଁ—ନିଆଁରେ ହାତ ଦେଲେ ହାତ ପୋଡ଼ିବ—ମୋର, ତାର, ତମର—ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ, ସମସ୍ତଙ୍କର । ସେଥିପାଇଁ ନିଆଁର ଦାହିକା ଶକ୍ତି ସ୍ୱତଃ ପ୍ରମାଣିତ—ସେ ଜାତିଭେଦରେ ବା ଦେଶାନ୍ତର ଭେଦରେ ପୋଡ଼ିବାରୁ କ୍ଷାନ୍ତ ହୁଏ ନା । ପାଶ୍ଚାତ୍ୟ ଜଗତରେ,କେବଳ ପାଶ୍ଚାତ୍ୟ ଜଗତ କାହିଁକି,ଏହି ଭାରତବର୍ଷରେ ହିନ୍ଦୁସମାଜକୁ ବାଦ୍ ଦେଲେ ଶୁଣିଆଛେ ଯେ ଏପରି ବିବାହ-ବିଚ୍ଛେଦ ଓ ପୁନର୍ବିବାହର ପ୍ରଥା ପ୍ରଚଳିତ ରହିଛି । ସେ ପ୍ରଥା କେବଳ ହିନ୍ଦୁ ପାଇଁ ଦୋଷାବହ, ଜଗତ ପାଇଁ ନୁହେଁ । ଏହା କଣ ଗୋଟାଏ କଥାର କଥା ? ତେବେ ଅନ୍ୟାୟ କାହିଁ ? ଦାବୀ ତାର ସଂପୂର୍ଣ୍ଣ ସୁସ୍ଥ ଓ ନ୍ୟାୟସଙ୍ଗତ । ସେ ବଞ୍ଚିବାକୁ ଚାହେଁ—ତରୁଣ ବୟସ ତାର, ବୁକୁଭରା ଲକ୍ଷ ଲକ୍ଷ ଆଶା, ଆଖିରେ ରଙ୍ଗିନ ନିଶାର ଫୁଲ, ସେ ତାର ଅନିବାର୍ଯ୍ୟ ପ୍ରୟୋଜନକୁ ଛାଡ଼ି ପାରେ ନା ଯେ କେବେ । ବଞ୍ଚିବା ପାଇଁ କିନ୍ତୁ ତାର ଏକାନ୍ତ ଲୋଡ଼ା—ସେ ଯେ ତାକୁ ଛାଡ଼ି ପାରେ ନା—ନ୍ୟାୟ ହେଉ, ଅନ୍ୟାୟ ହେଉ—ବିଶ୍ୱ ଧ୍ୱଂସ ହେଉ ପଛକେ—କିନ୍ତୁ ତାର, କିନ୍ତୁ ତାର— ଏକାନ୍ତ ଦ.ହାର ।

—୪—

"ଦୁଇ ଚାରି ଦିନ ଏଣେ ତେଣେ ବୁଲି ନ ଆସିଲେ ପାଠଶାଠରେ ଜମା ମନ ଦେଇ ହେଉ ନାହିଁ" ବୋଲି ସମସ୍ତଙ୍କ ଅମତରେ ହିମାଂଶୁ ହୋଷ୍ଟେଲ ଛାଡ଼ି ବାହାରି ପଡ଼ିଲା ଘର ଉଦ୍ଦେଶ୍ୟରେ । ତା ଅବସ୍ଥା ଦେଖି ମତ ଦେଲା କେବଳ ବଡ଼ ଭାଇ ସୁଧାଂଶୁ ଦାସ । ସେ ତ ସ୍ପଷ୍ଟ ବୁଝି ପାରୁଛି, ଏଠାରେ ଇମିତି ଭାବରେ ରହି ବିଶେଷ କିଛି ଲାଭ ହେଉ ନାହିଁ—

କେଇ ଦିନ ହେଲା ଭୁଲରେ ମଧ୍ୟ ବହି ଖଣ୍ଡିଏ ତ ହାତରେ ଧରୁ ନାହିଁ ସେ। ପରୀକ୍ଷାର ବଡ଼ ବେଶି ଡେରି ମଧ୍ୟ ନାହିଁ। ଏପରି ଭାବରେ ଶୋଇ ବସି ଦିନ କଟାଇଲେ, ଜୀବନରେ ଯେ କେବେ ସେ ଉତ୍ତୀର୍ଣ୍ଣ ହୋଇପାରିବ ନାହିଁ, ଏହା ଅତି ସାଧାରଣ କଥା। ସୁଧାଂଶୁ ତ ଜାଣେ, ତାଠାରେ ଗୋପ-ନୀୟ ବୋଲି ହିମାଂଶୁର କେବେ କିଛି ନ ଥିଲା। ହଠାତ୍ ତାର ହେଲା କଣ? ତାର ଏହି ଚଞ୍ଚଳତାର ସଠିକ କାରଣ ଜାଣିବା ପାଇଁ ଥାଉ, ଶତ ସହସ୍ର ଚେଷ୍ଟା କରି ମଧ୍ୟ ଷନ୍ଦୁତ୍ସର୍ଗ କିଛି କଳ୍ପନା କରିପାରିଲା ନାହିଁ ସେ। ସୁତରାଂ ତା ସହିତ ଏକମତ ହେବା ଛଡ଼ା ଉପାୟ କଣ? ସେ ତ ଏପରି ନ ଥିଲା, ଗୋଟାଏ କୌଣସି ଗୁରୁତର କାରଣ ଭିନ୍ନ ପରୀକ୍ଷା ପୂର୍ବେ ନିଶ୍ଚେଷ୍ଟ ରହିବା ପିଲା ଆଉ ଯିଏ ଯାହାଁ ଥାଉ ନା କାହିଁକି, ହିମାଂଶୁ ଯେ ନୁହେଁ, ତା ସ୍ୱତଃସିଦ୍ଧ।

ହିମାଂଶୁ ଘରକୁ ଆସି ପହଞ୍ଚିବା ବେଳେ ଗୋପେଶ୍ୱର ବାବୁ ଜମି-ଦାରୀର ଗୋଟିଏ କଣ ବିଶେଷ ତଦନ୍ତ ପାଇଁ ମୋଫସଲ ବାହାରୁଥିଲେ। ହଠାତ୍ ହିମାଂଶୁକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଛିଡ଼ାହୋଇ ରହିଲେ। ଦୁଇଦିନ ପୂର୍ବେ ସୁଧାଂଶୁର ଚିଠି ପାଇଛନ୍ତି। କାହିଁ ସେଥିରେ ତ ଆସିବାର କୌଣସି ସମ୍ବାଦ ନ ଥିଲା? ତେବେ ହଠାତ୍ କିଛି ଖବର ନ ଦେଇ ଏ ଆସିଲା କାହିଁକି? ହିମାଂଶୁ ପାଖକୁ ଆସି ଗୋଡ଼ତଳେ ମୁଣ୍ଡ ଲଗାଇ ପ୍ରଣାମ କଲା। ଗୋପେଶ୍ୱର ବାବୁ ଉଦ୍‌ବେଗ ଲୁଚାଇ ପଚାରିଲେ, "କଣ ରେ ଖବର; ସବୁ ଭଲ ତ?"

"ଆଜ୍ଞା ହଁ।"

"ସୁଧାଂଶୁ?"

"ଭଲ ଅଛି।"

"ତମ ପରୀକ୍ଷା କେବେ?"

"ମାସେ ଖଣ୍ଡେ ଡେରି ଅଛି।"

"ତେବେ ହଠାତ୍ ଚାଲିଆସିଲୁ ଯେ?"

"ଏଇ କେଇ ମାସ ଦିନରାତି ଖଟି ଖଟି ବଡ଼ ଶ୍ରାନ୍ତ, କ୍ଲାନ୍ତ ହୋଇ ପଡ଼ିଲି। ମୁଣ୍ଡ ବୁଲାଉଛି ନିତି ନିତି।"

"ସେଠାରେ ଡାକ୍ତର ଦେଖାଇଲୁ ନାହିଁ ?"

"ସମସ୍ତେ କହିଲେ ସ୍ନାୟୁଦୁର୍ବଳତା, ଦୁଇଚାରି ଦିନ ବୁଲିବୁଲି କରି ଆସିଲେ ଆପେ ଆପେ ଭଲ ହୋଇଯିବ ।"

"ଏଟା କିଛି ନୁହେଁ ରେ—। ଗୋବିନ୍ଦ କବିରାଜଙ୍କୁ କାଲି ଦେଖାଇ ଔଷଧପତ୍ରର ଯାହା ହେଉ ବ୍ୟବସ୍ଥା କରିବା । ଦୁଇ ଦିନରେ ଭଲ ହୋଇଯିବ । ମୁଁ ତ ଏକ୍ଷଣି ମୋଫସଲ ବାହାରୁଛି, ଫେରିବାକୁ ବୋଧ ହୁଏ ସନ୍ଧ୍ୟା ହୋଇଯିବ । ବିଶ୍ୱେଶ୍ୱର ଅଛି, ପ୍ରକାଶ ଘରକୁ ଖବର ପଠାଇ ଦେ । ଏ ବେଳ ସେଠାରେ ଖିଆପିଆ କରି ବିଶ୍ରାମ କର, ମୁଁ ଫେରିଆସେ, ଯାହା ହେଉ କରାଯିବ—" କହି ଗୃହ କାଠିଟି ଧରାଇ ଦେଇ ଗୋପେଶ୍ୱର ବାବୁ ଚାଲିଗଲେ । ହିମାଂଶୁ ଘର ଭିତରକୁ ଯାଇ ତକ୍ତପୋଷ ଉପରେ ଲମ୍ବ ହୋଇ ଶୋଇପଡ଼ିଲା । ସେହି ଘରଦ୍ୱାର, ସେହି ଗାଁଗୁଳି, ସେହି ସବୁ ପରିଚିତ ଗ୍ରାମବାସୀ, ସବୁ ଅଛି; କିନ୍ତୁ ନାହିଁ କେବଳ ତାର ଶାନ୍ତି-ମୟ ଜୀବନର ଆନନ୍ଦ-କୋଳାହଳ । ବିଜୟା ପ୍ରଦୋଷର ପ୍ରଜାପତିର ପରି ତରୁଣ ଜୀବନ ତାର ସାହାରାର ମରୁପରି ଧୂ ଧୂ କରୁଛି । ଅଲକ୍ଷ୍ୟର ମହାନ୍ ସ୍ରଷ୍ଟା—ଏ ଜ୍ୱାଳା ବୁକୁରେ ନ ଦେଲେ—ତମ ସୃଷ୍ଟି କଣ ଅଚଳ ହୋଇ-ପଡ଼ୁଥିଲା ପ୍ରଭୁ ? ତମରି ସୃଷ୍ଟିରେ ଏ ମଧୁର ଜଟିଳତା କାହିଁ ? ପାହାଡ଼ର ପଥର-ବୁକୁରେ ନିର୍ଝରର ସ୍ରୋତ ବହୁଛି; ଆଜି ଆମ ବୁକୁରେ ପ୍ରେମର କ୍ଷୀଣ-ତମ ଫଲ୍‌ଗୁଧାରା କାହିଁକି ପ୍ରଭୁ ? ପ୍ରେମର ଯଦି ସତେ ସତେ ସୃଷ୍ଟି ହେଲା ତମରି ପ୍ରେମମୟ ହାତରେ, ତେବେ ଆଲୁଅ ତଳେ ଛାୟାପରି ତା ଉହାଡ଼ରେ ଗମ୍ଭୀର ନିରାଶାକୁ ରଖିଲ କାହିଁ, ଏତେ ସଂଗୋପନରେ ? ଜ୍ୱାଳା ତାର ସହିବା ପାଇଁ ଶକ୍ତି କାହିଁ ? ହୃଦୟ ଯେ ଖଣ୍ଡି ଝୁରୁ ଝରୁ ହୋଇ ଝରିଯାଏ—। କି କ୍ଷଣରେ ସେ ଯାଇଥିଲା ବିହାରୀ ବାବୁ ପାଖକୁ, କି କ୍ଷଣରେ ଦେଖାହେଲା ତାର ଲିଲି ସଙ୍ଗରେ—। ଇମିତି ଅପଣାର କରି ବାନ୍ଧି ସାରି, କାହିଁ ସେ ବନ୍ଧନ କାଟି ଗଲା ? କେତେ ଆଶା ଥିଲା ତାର, କେତେ ସୁଖସ୍ୱପ୍ନ ଗଢ଼ିଥିଲା ସେ ମନେ ମନେ—ଏହି ଘରେ କମ୍ପିତ କରି ଜୀବନ-ପ୍ରଦୀପ ଜାଳି ଆରତି କରିବ ସେ ତାର ପ୍ରାଣପ୍ରିୟାର । ସେ ଯେ ଭାବିଥିଲା, କପୋତ କପୋତୀ ପରି ଯୋଡ଼ି ବାନ୍ଧି ଗାଇଯିବ ପ୍ରେମର ଅସରନ୍ତା

ଉନ୍ମାଦ ଗୀତ ସାରା ଜୀବନ । ଅଚ୍ଛ ସେ ଅକାଶକୁସୁମ କଳ୍ପନାର ଫୁତ୍କାରରେ ତାସ—ଘର ପରି ଉଡ଼ିଯାଇ ସାରିଲାଣି । ସତେ କଣ ଗଲା—ଗଲା ସେ ଚିରଦିନ ପାଇଁ ? ନା, ନା, ଆସିବ, ଆସିବ ସେ—ଆସିବ ପାହାଡ଼ ଡେଇଁ, ପର୍ବତ ଭାଙ୍ଗି, ବନ ବନାନ୍ତର ଉଜାଡ଼ ଦେଇ ଅଣିବ ତାର ଜୀବନ-ଲକ୍ଷ୍ମୀକୁ ଫେରାଇ ନିଜେ—ସେ—।"

ଭୃତ୍ୟ ବିଶ୍ୱେଶ୍ୱର ଆସି ତାର ସେ ପୁଲକ-ବିଷାଦର ଜାଗରୂକ ସ୍ୱପ୍ନ ଭାଙ୍ଗି ଡାକିଲା—

"ବାବୁ !" ହିମାଂଶୁ ନୀରବ ।

"ବାବୁ ! ସାନବାବୁ !"

ଚକିତକଣ୍ଠରେ ହିମାଂଶୁ କହିଲା, "କଣ ରେ ?"

"ଅନେକ ବେଳ ହେଲାଣି, ତେଲ ଲଗାଇ ଦିଏଁ— ।" "ନା, ନା, ତେଲ ଲଗାଇ ଅସେ ଯେ ମୋତେ; ଦେ, ଦେ, ତେଲ ଅଣ" କହି ତେଲ ଲଗାଇ ଗାମୁଛାଟି କାନ୍ଧରେ ନେଇ ପାଖ ପୋଖରୀକୁ ନ ଯାଇ ଗଲା ସେ ସେହିଠାକୁ—ଯେଉଁ ପୋଖରୀଟିକୁ ଗଲେ ପଥରେ ମିଳିବ ତା ସୁଖସ୍ୱପ୍ନ-ବିଜଡ଼ିତ ବୃନ୍ଦର ଘରଟି ! କେତେ ସ୍ମୃତିବିଜଡ଼ିତ ସେ ଘର, ପବିତ୍ର ତୀର୍ଥଠାରୁ ଗରୀୟାନ ! ବୃନ୍ଦ ଘର ପାଖକୁ ପହଞ୍ଚି ଦେଖେ—ଘର କବାଟ ବନ୍ଦ । ବଗିଚା ମାଳୀ ତା କାମ କରୁଛି—ସେଠାକୁ ନ ପଶି ପାଦେ ଯାଇ ପାରିଲା ନାହିଁ ସେ । ବଗିଚାକୁ ଯାଇ ବସେରାଇ ଗୋଲାପ ପାଖରେ ଛିଡ଼ା ହେଲା । ଥାଙ୍କଟି ବଡ଼ ବଡ଼ ଲାଲ ରକ୍ତ-ଗୋଲାପ ଫୁଟି ରହିଛି—ବେଦନା-ସିକ୍ତ କଳିକା ପରି ! ମଧୁସୂଦନ ବାବୁଙ୍କ ବଗିଚାମାଳୀକୁ ତୋଷାମୋଦ କରି ଲାଞ୍ଚ ଦେଇ କେତେ ଚେଷ୍ଟା କରି ଏହି ଗଛଟି ଅଣି ଦେଇଥିଲା ସେ ବୃନ୍ଦକୁ—ତା ସୋହାଗବୋଲା କଥାରେ । ଗଛଟିକୁ ଦେଖି ମନେ ପଡ଼ିଲା ସେ ଅତୀତ ସୁଖର ଇତିହାସ—ବୃନ୍ଦ ଗୋଲାପଟିଏ ଧରି ହସି ହସି କମ୍ପିତ ଧାଇଁ ଅସି ଦେହକୁ ଦେହ ଲଗାଇ ବସିପଡ଼ି ଆଦରର ସ୍ୱରରେ ମାଗିଲା, ବସେରାଇ ଗୋଲାପ ଗଛଖଣ୍ଡିଏ । କି ମିନତିଭରା ସେ ଅଖିର ଚାହାଣି ! ହିମାଂଶୁ ଅତୀତ ସ୍ମୃତିରେ ବିଭୋଳ—ପଛପଟରେ ଅଚହ୍ନା ଲୋକ ଦେଖି ନବ ନିଯୁକ୍ତ ମାଳୀ ଅସି କଡ଼ା ସ୍ୱରରେ କହିଲା, "ଏଇ ବାବୁ, ଏଠାରେ କଣ କରୁଛ ? ଯାଅ, ଯାଅ, ଏଠାକୁ ପଶିବା ମନା ଅଛି ।"

ହାସ୍ୟରେ ! ଯେଉଁଠାରେ ସେ ଏକଛତ୍ର ଅଧିପତି ହୋଇ ରହିବ ବୋଲି ଭାବିଥିଲା, ଆଜି ଦୈବ-ଦୁର୍ବିପାକରେ ସେଠାରେ ହିଁ ସେହି ଲାଞ୍ଛିତ, ବହିଷ୍କୃତ ! ଭାଗ୍ୟର କି ନିଷ୍ଠୁର ପରିହାସ ! ମାଳୀ ତ ଜାଣେ ନା କାହାର ତୃପ୍ତି ପାଇଁ ତା'ର ପ୍ରାଣପାତ ପରିଶ୍ରମରେ ଏ ବଗିଚା ! ହିମାଂଶୁ ଗୋଟିଏ ଦୀର୍ଘଶ୍ୱାସ ଛାଡ଼ି ବଗିଚାରୁ ବାହାରି ପଡ଼ିଲା । ଅପମାନର ଜ୍ୱାଳାରେ ଜଳି ମରୁଥିଲେ ସୁଦ୍ଧା ସେହି ପିଣ୍ଡାଟିରେ—ଯେଉଁଠାରେ କେତେ ଦିନ ସକାଳ ସନ୍ଧ୍ୟା ଚାନ୍ଦ ସଙ୍ଗରେ ବସି ବସି କଟାଇଛି ସେ—ସେ ତୀର୍ଥଧୂଳି ଅଙ୍ଗରେ ନ ବୋଳି ସେ ଯାଇପାରିଲା ନାହିଁ । ପୁଣି ମାଳୀ ଡାକ ଦେଲା, "ଏଠାରୁ ଯାଅ ବାବୁ, ଘରେ କେହି ନାହାନ୍ତି, ଅନ୍ୟ କାହାରିକୁ ଅଇବାକୁ ମନା ଅଛି ।" ହିମାଂଶୁ ଆଡ଼-ଚାହାଣିରେ ଥରେ ମାଳୀ ଆଡ଼କୁ ଅନାଇଲା ମାତ୍ର—ସେଥିରେ ହିଁ ମାଳୀର ଅନ୍ତରାତ୍ମା କମ୍ପି ଉଠିଲା । ହିମାଂଶୁ ନୀରବ ଶୁଷ୍କ ହାସ୍ୟରେ ଚାଲିଗଲା ।

ସନ୍ଧ୍ୟାରେ ଫେରି ଗୋପେଶ୍ୱର ବାବୁ ଦେଖିଲେ ଦୁଆର ବନ୍ଦ । ବଙ୍କେଶ୍ୱର କହିଲା, "ସାନ ବାବୁ ୪ଟା ବେଳେ ଦୁଆର ଦେଇ ବାହାରି ଯାଇଛନ୍ତି ।" ଗୋପେଶ୍ୱର ବାବୁ ବାରଣ୍ଡାରେ ବସି ବସି ଉଦ୍‌ବିଗ୍ନ ହୋଇ ଉଠିଲେ । ବଙ୍କେଶ୍ୱର ସମ୍ଭବ ଅସମ୍ଭବ ସବୁଠାରେ ଖୋଜି ଖୋଜି ନିରାଶ ହୋଇ ଘରକୁ ଫେରିବାବେଳେ ଶୁଣିଲା—ବୁଧିଆ ଗଉଡ଼ ସାନବାବୁଙ୍କୁ ଷ୍ଟେଶନ ପାଖରେ ଦେଖି ଆସିଛି—ବାବୁ ଟିକଟ କିଣୁଥିଲେ । ଗୋପେଶ୍ୱର ବାବୁ ବ୍ୟସ୍ତ ହୋଇ ଗୃହ ଭିତରକୁ ପଶି ଦେଖିଲେ—ସର୍ବନାଶ ! ତାଙ୍କ ବାକ୍ସ ଖୋଲା ପଡ଼ିଛି—ଏଥିରେ ଯେ ସରକାରୀ ହଜାର, ବାରଶ ଟଙ୍କା ଥୋଇଦେଇ ଯାଇଥିଲେ ସେ ! ଅଗ କରି ଟଙ୍କା ଥଳି ଧରି ବସିଲେ—ଦେଖିଗଲା ୫୨୦୦ଟଙ୍କା ମାତ୍ର କମ ପଡ଼ିଛି; ସଙ୍ଗରେ ଗୋଟାଏ କାଗଜ । ଗୋପେଶ୍ୱର ବାବୁ କାଗଜ ଖୋଲି ଦେଖିଲେ—ହିମାଂଶୁର ଲେଖା—

"ମୁଁ ଅଧମ, ଅଯୋଗ୍ୟ, ମୋଦ୍ୱାରା ଆପଣଙ୍କର କୌଣସି ଆଶା ସଫଳ ହେଲା ନାହିଁ, ହେବ ନାହିଁ । ମୁଁ ଅତି ଦୁର୍ଭାଗ୍ୟ—ମୁଁ ଆଜି ଅନିଶ୍ଚିତର ପଥରେ ଯାତ୍ରା କରୁଛି । ଏହାର ପରିସମାପ୍ତି କେବେ, ମୁଁ ନିଜେ ଜାଣେ ନା । ଯିବାବେଳେ ଆପଣଙ୍କୁ ଓ ବଡ଼ଭାଇଙ୍କୁ ସବୁଲି

ପ୍ରଣାମ ଜଣାଉଛି । ପ୍ରାର୍ଥନା—କେବଳ ସର୍ବାନ୍ତଃକରଣରେ କ୍ଷମା ଦେବେ । ବୃଥା ମୋ ସନ୍ଧାନରେ ଖରଚପତ୍ର କରି କିଛି ଲାଭ ନାହିଁ । ମୁଁ ସଫଳ-କାମ ନ ହେବାଯାଏ ଫେରିବି ନାହିଁ । ତେବେ ଶପଥ କରି ଯାଉଛି, ମୁଁ ଆତ୍ମଘାତୀ ହେବି ନାହିଁ କେବେ—

ଭାଗ୍ୟହୀନ
ହିମାଂଶୁ"

ଗୋପେଶ୍ୱର ବାବୁ ବଜ୍ରାହତ ପରି ସ୍ତବ୍ଧ ହୋଇ ରହିଲେ । କଣ କରିବେ, କିଛି ସ୍ଥିର କରିପାରୁ ନାହାନ୍ତି—ତାଙ୍କ ଜ୍ଞାନବୁଦ୍ଧି ସବୁ ଲୋପ ପାଇବାକୁ ବସିଲା । ଅନ୍ଧକାର, ଅନ୍ଧକାର ! ଜୀବଧ୍ୱଂସୀ ଅନ୍ଧକାରରେ ଭରି ଆଜି ସମସ୍ତ ଦୁନିଆ । ହେବାର ହିଁ କଥା ! ସେ ଯେ ମାତୃହୀନ ପିଲା ଦୁଇଟିକୁ ପିତାମାତାର ଅପରସୀମ ସ୍ନେହ ଦେଇ ମଣିଷ କରୁଥିଲେ—ମା'ର ଅଭାବ-ବେଦନାର ସ୍ପର୍ଶରୁ ବଞ୍ଚାଇ ରଖିବା ପାଇଁ ପ୍ରାଣପାତ ଯତ୍ନର ଅବଧି ନ ଥିଲା ତାଙ୍କର । କେତେ ଆଶା ଥିଲା—ମନରେ ମନରେ, ଆଜି ପଲକରେ ଧୂଳିସାତ୍ ହୋଇଗଲା ତାଙ୍କ କଳ୍ପିତ ସୁଖର ବିରାଟ ସାମ୍ରାଜ୍ୟ; ଆଜି ସେ ନିଃସ୍ୱ—ବ୍ୟଥାତୁର—ଅସହାୟ !

---

—୭—

ହିମାଂଶୁ ଏଣେ ତେଣେ ବୁଲି ବୁଲି ପରିଶେଷରେ "ଜୟ ଜଗନ୍ନାଥ ସ୍ୱାମୀ" ବୋଲି ବାହାରି ପଡ଼ିଲା ରେଙ୍ଗୁନ ଉଦ୍ଦେଶ୍ୟରେ । ଅଚିହ୍ନା ପଥଘାଟ, ଆତ୍ମୀୟ ବାନ୍ଧବ ପରିଶୂନ୍ୟ ସୁଦୂର ବିଦେଶକୁ ଆସି କାହିଁ ରହିବ ? କଣ କରିବ ? କିମିତି ଚଳିବ ? ସ୍ଥିର କରିବା ପୂର୍ବରୁ ଉଦର ପୂର୍ତ୍ତି ପାଇଁ ଯାଇ ଉଠିଲା ସେ କାଳିକ-ବୋର୍ଡିଂରେ । ଆସିଛି ସେ ବିପୁଳ ଅର୍ଥସଞ୍ଚୟ ଆଶାରେ—ସହଜ, ସରଳ, ସାଧାରଣ ପଥ ଛାଡ଼ି । ଏବେ ତାକୁ ତଡ଼ା କାଳିର ହିସାବ କରି ଚଳିବାକୁ ପଡ଼ିବ । ବୋର୍ଡିଂରେ ପେଇଁ ଖାଇ,

ସେଠାରେ କିଛି ଦିନ ରହିଲେ ଯେ ତାକୁ କପର୍ଦ୍ଦକ-ଶୂନ୍ୟ ହେବାକୁ ପଡ଼ିବ, ତାହା ବୁଝିପାରି ମନୋମତ ଛୋଟିଆ ଘରଟିଏ ନ ମିଳିବା ଯାଏ ପାଗଡ଼ା ଓ ଫଣ୍ଟା ସଂଲଗ୍ନ ବଜାର ବା :"ଫୁଦଚଙ୍ଗରେ" ଯାଇ ଶତଶତ "ଫୁଙ୍ଗି" ବା ସାଧୁ ସଙ୍ଗରେ ମିଶିଗଲା ସେ । ଜଣ ଥିଲେ ତାର "ଫୁଙ୍ଗି" ସାଙ୍ଗଲେ ବର୍ମାରେ ଖାଇବା ଅଭାବ ନାହିଁ । ପ୍ରତ୍ୟେକ ଗୃହସ୍ଥର କମ ପକ୍ଷରେ ୩ । ୪ ଜଣ ଫୁଙ୍ଗି ପାଇଁ ଖାଇବା ବନ୍ଦୋବସ୍ତ କରିବା ସେମାନଙ୍କ ଦୈନନ୍ଦିନ କର୍ମ । କିନ୍ତୁ କେବଳ ଉଦର ପୂରଣ ପାଇଁ ତ ଆସି ନାହିଁ ସେ—ଆସିଛି ଅନନ୍ତ ଆଶା ବୁକୁରେ ଧରି କାମନା ତାର ସଫଳ କରିବା ପାଇଁ । ପାଞ୍ଚ ସାତ ଦିନ ବୁଲି ବୁଲି କରି ଶୋଏଡ଼ାଗନ ପାଗଡ଼ାକୁ ଯିବା ପଥର ପଶ୍ଚିମ ପଟ ଗଳିରେ ଗୋଟିଏ ଛୋଟିଆ ଘର ଦ୍ୱାରରେ ଭଡ଼ାଟିଆ ପ୍ରୟୋଜନ ଲେଖା ଦେଖି ଅନୁସନ୍ଧାନ ପାଇଁ ପ୍ରବେଶ କଲା । ଘରଟିର ଭଡ଼ା କମ, ଲୋକବାକଙ୍କର ମଧ୍ୟ ବିଶେଷ ଗୋଳମାଳ ନାହିଁ; ମାତ୍ର ୪।୫ ଟି ମଫସଲିଆ ଲୋକ, ଜଣେ କାରଖାନାର କର୍ମଗୃହସ୍ଥ, ସୁତରାଂ ହିମାଂଶୁ ମଧ୍ୟ ଧୂର୍ଜଟି ଦାସ ନାମରେ ପରିଚୟ ଦେଇ ସେମାନଙ୍କ ସଙ୍ଗରେ ମିଶିଗଲା । କର୍ମଗୃହସ୍ଥ ବିନୟକୃଷ୍ଣ କେଉଁ କାରଖାନାରେ ଯେ କାମ କରନ୍ତି, ଭଗବାନଙ୍କୁ ଜଣା । କର୍ମକୁ ଯିବା ସମୟର ସ୍ଥିରତା ନାହିଁ । କେବେ ସକାଳ ବେଳେ, କେବେ ଦୁଇଟା ବେଳେ, କେବେ ରାତିରେ ଦଶଟା ବେଳେ, କ୍ରମାନ୍ୱୟରେ ଦୁଇ ଚାରି ଦିନ ହୁଏ ତ ବସାକୁ ମଧ୍ୟ ଫେରନ୍ତି ନାହିଁ । ଲୋକଟିର ବ୍ୟବହାର କିନ୍ତୁ ଅତି-ଭଦ୍ର । ସେଦିନ ରାତି ୭ଟା କି ୭॥ଟା, ବିନୟକୃଷ୍ଣ ହଠାତ୍ ବସାକୁ ଆସି କହିଲେ, "ଧୂର୍ଜଟି ବାବୁ, ଗୋଟିଏ କଥା କହିବି, ଯଦି କିଛି ମନେ ନ କରନ୍ତି ।"

ହିମାଂଶୁ ହସି ହସି ଜବାବ ଦେଲା—"ବେଶ୍, କଥାଟା କଣ ଅଦେଶ କରନ୍ତୁ ?"

"ଅନୁଗ୍ରହ କରି ମୋତେ ଟ୫୯ ଧାର ଦେଇପାରିବେ ? ମୁଁ କାଲି କିମ୍ବା ପରଦିନ ଫେରାଇ ଦେବି ।"

"ଏଥି ଆଉ ଏଡ଼େ ବଡ଼ କଥା କଣ ଯେ, ଏତେ କିନ୍ତୁ କିନ୍ତୁ କରୁଛନ୍ତି," କହି ହିମାଂଶୁ ପାଞ୍ଚଟା ଟଙ୍କା କାଢ଼ି ଦେଲା । ବିନୟ ଚାଲିଯିବା ପରେ

ପିଲ୍ଲଙ୍କ ମଧ୍ୟରୁ ଦୁଇ ଜଣ ଆସି କହିଲେ, "ବାବୁ, ଜ୍ୟାମିତିର ଦୁଇଟା ପ୍ରୋବ୍ଲେମ୍ ଆମେ ବୁଝିବା ପାଇଁ ବାହାରକୁ ଯାଉଛୁ, ଆପଣ ବସାରେ ରହିଲେ, ଛୋଟିଆ ପିଲ୍ଲମାନଙ୍କୁ ଟିକିଏ ଦେଖିବେ—ସେଗୁଡାକ ବଡ ଖରୁ।

ହିମାଂଶୁ କହିଲା, "କଣ ପ୍ରୋବ୍ଲେମ୍ ଦେଖେଁ ?"

ପିଲ୍ଲମାନଙ୍କ ପକ୍ଷରେ ତାହା ଅତ' ଦୁରୂହ ସିନା, ହିମାଂଶୁ ଅତି ସହଜରେ ଅଳ୍ପକ୍ଷଣ ମଧ୍ୟରେ ସେ ଦୁଇଟି ବୁଝାଇ ଦେବାରୁ ବଡ଼ ପିଲ୍ଲଟି କହିଲା, "Sir, ଶୁଣୁ ଥିଲୁଁ ଆପଣ କାମ କରିବା ପାଇଁ ଆସିଛନ୍ତି। ଆମ ସ୍କୁଲର ଅଙ୍କ ଶିକ୍ଷକ ଇସ୍ତଫା ଦେଇ ଚାଲିଯାଇଛନ୍ତି—କେହି ଅଜଯାଏ ଆସି ନାହାନ୍ତି, ଆପଣ ଖଣ୍ଡିଏ ଦରଖାସ୍ତ କଲେ ବଡ଼ ଭଲ ହୁଅନ୍ତା।"

ଶିଶୁ ସଂଗଲ୍ପରେ ହିମାଂଶୁ ଈଷତ୍ ହାସ୍ୟ କରି କହିଲା, "ଦେଖିବା।" ମୁହଁରେ ସିନା କହିଲା ଦେଖିବା; କିନ୍ତୁ ମନ ତ ତାର ସେ ଦିଗରେ ନାହିଁ। ଥିଲେ ଆଜ କର୍ଥି ସୁଦୂର ପ୍ରବାସରେ ପଡ଼ି ରହିଥାନ୍ତା। B. A., M. A. ପାସ କରି ୫୦।୬୦ ଟଙ୍କାର ଜଣକ ସ୍କୁଲମାଷ୍ଟର ହେବା ତ ତାର କାମନା ନୁହେଁ, କାମନା ତାର ଅଗାଧ ଅର୍ଥସଞ୍ଚୟ।

ରାତି ୧୧ଟା ବାଜିଲା, ଖାଇପିଇ ସମସ୍ତେ ଶୋଇଗଲେ; କିନ୍ତୁ ବିନୟ ବାବୁର ଦେଖା ନାହିଁ। ପୂଜାରୀ ଖାଇବା ନେଇ ବସି ବସି ବିରକ୍ତ ହୋଇ ଶେଷକୁ ହିମାଂଶୁର କୋଠରୀରେ ଥୋଇଦେଇ ଚାଲିଗଲା। ସଙ୍ଗେ ସଙ୍ଗେ ଅପରୂପ ବେଶରେ ଆସି ପ୍ରବେଶ କଲେ ଶ୍ରୀମାନ୍ ବିନୟକୃଷ୍ଣ। କାମିଜର ବୋତାମଗୁଡ଼ାକ ଖୋଲ୍ଲପଡିଛି, କେଶପାଶ ଅବିନ୍ୟସ୍ତ, ଦେହଯାକ ପାନର ଦାଗ, ଗଳାରେ ଲମ୍ବା ଲମ୍ବା ଫୁଲମାଳ, ମୁହଁରେ ଗୋଟାଏ ବର୍ମା ଚୁରୁଟ—ଝଣ ଝଣ କରି କେତେଗୁଡ଼ାଏ ଟଙ୍କା, ଅଧୁଲି, ସୁକି, ଦୋଣି ଭୁଇଁରେ ଥୋଇଦେଇ ଗୋଡ଼ ଲମ୍ବାଇ ବସି ପଡ଼ିଲେ। ଠିଆ ହେବାର ଶକ୍ତି ଜମା ନ ଥିଲା—ତାଙ୍କ ନିଶାର ମାତ୍ରା ବଡ଼ ବେଶି ବଢ଼ିଯାଇଥିଲା କି ନା! ଜଡିତ ସ୍ୱରରେ କହିଲେ, "ଧୁକ୍କୁଟି ବାବୁ! ଭାଇ, ତମ ଟଙ୍କାର ଅସୀମ ଗୁଣ, ଆଜ ପାଞ୍ଚଟି ଟଙ୍କାରେ ଛଅଶ ଟଙ୍କା—କଣ କମ୍ କଥା ? ନିଶ୍ଚୟ ତମ ଟଙ୍କାରେ କିଛି ଗୁଣ ଅଛି। ପାଞ୍ଚ ଟଙ୍କା ବଦଳରେ ତମେ ଏହି ଦଶ ଟଙ୍କା ନିଅ। ବଡ଼ ଉପକାର କରିଥିଲ ଭାଇ! ଅଜ ତମେ

ଟଙ୍କା ପାଞ୍ଚଟି ଦେଇ ନ ଥିଲେ, କାଲି ଘରଭଡ଼ା, ମୁକ୍ତାସ୍ୱ ବେତନ,
କାହୁଁ ଯେ ଦିଅନ୍ତି, କିଏ ଜାଣେ ? ସ୍ୱୀକାର କରେ, ଅଦ୍ଭୁତ ଗୁଣ ଅଛି
ତମ ଟଙ୍କାରେ । ମୁଁ ଗୋଟାଏ ବାଜି ସୁଦ୍ଧା ହାରି ନାହିଁ । ମୁଁ ଅଛି ସାମାନ୍ୟ
କିଛି ପାଇଲି; କିନ୍ତୁ ରତନ ଶେଠ ପାଇଲେ—ପ୍ରାୟ ଅଢ଼େଇ ଲକ୍ଷ ।
ବମ୍ବଇର ମହାଜନ ଦୁଇ ଜଣ ଆଜି ସର୍ବସ୍ୱାନ୍ତ ହୋଇଗଲେ; କିନ୍ତୁ କ୍ଷାନ୍ତ
ହେବା ଲୋକ ନୁହନ୍ତି ସେମାନେ, କାଲି ପୁଣି ଖେଳ ଚାଲିବ । ଯିବ ?"

"ନା ।"

"ଆରେ ନା, ନା, ନା କଣ ? ତମ ଦୁଃଖକଷ୍ଟ ଘୁଞ୍ଚିଯିବ । ଚାଲ
ପାଞ୍ଚ କି ଦଶ ନେଇ । ଆଜି ଯଦି ଅଜଣା ପରି କପାଳ ଖୋଲେ, ଦେଖିବ,
ଏକା ରାତିକରେ ବଡ଼ ଲୋକ ।"

"ସେଠାକୁ ସମସ୍ତେ ଯାଇପାରନ୍ତି ?"

"ସମସ୍ତେ ଯିବେ ? ଟଙ୍କା ପଇଛି ନା କଣ ? ଯଦି ପୁରୁଣା ପରିଚିତ
ଲୋକ ନିଜ ଦାୟିତ୍ୱରେ କାହାକୁ ନେଇଯାଏ, ତେବେ ଯାଇଁ ସେ ପାସ୍
ପାଇବ ; ପାସ୍ ଛଡ଼ା ଭିତରକୁ ପ୍ରବେଶ ନିଷେଧ । ଆରେ ଭାଇ, ଆଜି ମୋ
ହାତରେ ଜମା ପାଞ୍ଚଟି ଟଙ୍କା ଥିଲା । ଶ ଦୁଇ ଟଙ୍କା ଥିଲେ ଆଜି କଣ
ବର୍ଷାରେ ପଡ଼ିଥାନ୍ତି ନା ? ଦେଶକୁ ଫେରି ଜମିଦାରୀ କିଣି ରାଜଭୋଗ
କରନ୍ତି । କାଲି ଚାଲ ନା—ଇଚ୍ଛା ହୁଏ ତ ଖେଳିବ, ନ ହେଲେ ନାହିଁ ।
କେବଳ ଯେ ଖେଳ ହୁଏ, ତା ତ ନୁହେଁ । ଖାଇ ପିଇ ଗୀତ ବାଜଣା ଶୁଣି
ଫେରି ଆସିବା । ଏଥିପାଇଁ ପାଞ୍ଚଟଙ୍କା ମନ୍ଦ ଖରଚ । ଯିବନା, ଇମିତି
କେତେ ପାଞ୍ଚଟଙ୍କା ଖର୍ଚ୍ଚ ହେଉ ନାହିଁ— ? ଚାଲ ତମେ କାଲି ମୋ
ସଙ୍ଗରେ ।"

"କାଲି କଥା କାଲି ବୁଝିବା; ଅଛି ଖାଇ ପିଇ ଶୋଇପଡ଼ । ମୁକ୍ତାସ୍ୱ
ଏଠାରେ ଖାଇବା ଦେଇ ଯାଇଛି ।"

"ମୁଁ ଖାଇ ଆସିଛି, ଆଜି ଅଉ କିଛି ଖାଇବି ନାହିଁ । ତମେ ଏ ଟଙ୍କା-
ଗୁଡ଼ା ବାକ୍ସରେ ଥୋଇ ଦେଇ ଚାବିଟା ଦେଇଦିଅ; ମୁଁ ଅଉ ଉଠିପାରୁ
ନାହିଁ" କହି ବିନୟ ବାବୁ ସେହିଠାରେ ଶୋଇ ପଡ଼ିଲେ । ତାଙ୍କର ଅଉ
ଉଠିବାର ଶକ୍ତି ନ ଥିଲା ସେତେବେଳେ ।

ପରଦିନ ସନ୍ଧ୍ୟାରେ 'ଯିବ କି ନାହିଁ' ହିମାଂଶୁ ଭାବୁଥିଲା । ଅନଭ୍ୟସ୍ତ ମନ ତାର ବିପଥରେ ଯିବାକୁ ସଙ୍କୁଚିତ ହୋଇପଡ଼ୁଥିଲା ଘନ ଘନ । ବେଳେ ବେଳେ ପ୍ରଲୋଭନ ଆସି କାନରେ କାନରେ ମନ୍ତ୍ର ଦେଉଥିଲା କେବଳ ଧନର ପାଇଁ ସେ ତ ଅଭ୍ୟସ୍ତ ହୋଇପଡ଼ି ନାହିଁ । ଯା—ଯଦି କପାଳରେ ଘଟିଯାଏ ତେବେ, ତେବେ— ? ସଙ୍ଗେ ସଙ୍ଗେ ଫୁଟି ଉଠିଲା ସୁନ୍ଦର ଅବେଶଭରା ଆଖି ଦୁଇଟି, କମନୀୟ ମୁଖଶ୍ରୀ, ପୁଷ୍ପିତ ବାସନ୍ତୀ ଲତା ଭଳିଆ ଯୌବନପୂର୍ଣ୍ଣତାରେ କଠୋର ଢଳଢଳ ତନୁ ତାର ! ଫୁଲ ପରି କମନୀୟ ହସ, ଧଳା ମାର୍ବେଲ ପଥରର ଦେବୀ ପ୍ରତିମା ଭଳିଆ ଦେହର ରଙ୍ଗ—ମୁଣ୍ଡରେ ଝକଝକଲା ମେଘପରି ଜୁଡ଼ା ତାର ! ଛାତି ପାଖର ପଞ୍ଜରା ଉପରେ ବ୍ଲାଉଜର ହୀରାର ବୋତାମ ଦାଉ ଦାଉ ଜଳୁଛି । ବିକାଶୋନ୍ମୁଖୀ ପଦ୍ମକଳି ପରି ପାଦ ଦୁଇଟିରେ ସୁନାର ପାଉଁଜର—କି ସୁନ୍ଦର ! କି ସୁନ୍ଦର !

ହିମାଂଶୁ ଭାଗ୍ୟପରୀକ୍ଷା ପାଇଁ ସମସ୍ତ ପୁଞ୍ଜିପଇସା ନେଇ ବାହାରି ପଡ଼ିଲା ବିନୟ ସଙ୍ଗରେ । କେତେ ଅଳିଗଳି ବୁଲାଇ ଫେରାଇ ବିନୟ ନେଇ ପହଞ୍ଚାଇଲା ଗୋଟିଏ ସାଧାରଣ ଦୋକାନ ଘରେ । ହିମାଂଶୁ ତ ଅବାକ୍ ! ଦୋକାନୀ ସଙ୍ଗରେ ଆଖିଠାରରେ କଣ କଥାବାର୍ତ୍ତା ହେଲା । କାର୍ଡିଷ୍ଟ ପାସ୍ ଫି ଦେଇ ଦୁହେଁ ଘର ଭିତରକୁ ଗୃଲଗଲେ । ସେତେବେଳକୁ ପୂରାମାତ୍ରାରେ ମଜଲିସ୍ ଜମି ଯାଇଛି । କେଉଁଠାରେ ବାବୁମାନଙ୍କର ସୋଡ଼ା ଲେମନେଡ଼ର ବୋତଲ ଗୃଲିଛି—କେଉଁଠାରେ ସୁକେଶୀ ତର୍ମ୍ମୀ ନର୍ତ୍ତକୀର ନାଚ ଗୃଲିଛି । ଏସବୁ ଅତିକ୍ରମ କରି ମଜଲିସ୍ ଭିତରକୁ ଗଲାବେଳେ କେବଳ ଟଙ୍କାର ଝଣତ୍କାର ! ପ୍ରାୟ ଗୃଳିଶ ପଚୃଶ ଲୋକ ଖେଳିବାକୁ ବସିଛନ୍ତି । ବିନୟ ହିମାଂଶୁ ମଧ୍ୟ ଦୁଇଟି ସ୍ଥାନ ଅଧିକାର କଲେ । ବିନୟ ପୁରୁଣା ଲୋକ; ଅନେକଙ୍କ ସଙ୍ଗରେ ଆଳାପ–ପରିଚୟ ଅଛି । ସେ ଦୁଇ ଗୃରି ଜଣଙ୍କ ସଙ୍ଗରେ ହିମାଂଶୁର ପରିଚୟ କରାଇଦେଲା । ନବ ଅତିଥିକୁ ସେମାନେ ଯଥୋଚିତ ଅଦରସମ୍ଭାଷଣ କରିବାକୁ କୁଣ୍ଠିତ ହେଲେ ନାହିଁ । ଖେଳର କିନ୍ତୁ ବିରାମ ନାହିଁ ।

ପ୍ରଥମ ପ୍ରଥମ ହିମାଂଶୁ ଆଶାତୀତରୂପେ ଜିଣିବାକୁ ଲାଗିଲା; ମନ ମଚ୍ଛି-ଗଲା ବେଳେ ତାର ହାରିବା ଯୋଗ ଆରମ୍ଭ ହେଲା । କମ୍‌ନ୍ୟୁରେ ଗୁରୁ ପାଞ୍ଚ ଥର ହାରିଯିବାରୁ ସର୍ବସ୍ୱାନ୍ତ ହୋଇପଡିଲା ସେ । ଏବେ ବେଳେ ଆଉ ଉଠିବାର ଭରସା ନାହିଁ ତାର; କିନ୍ତୁ ଯଦି ଫେରିପାରେ ? ପଛରୁ କୋଟପେଣ୍ଟଧାରୀ ଜଣେ ଭଦ୍ରଲୋକ ଆସି ହିମାଂଶୁକୁ ସାହାଯ୍ୟ କରିବାକୁ ଲାଗିଲେ; କିନ୍ତୁ ବୃଥା—

ହିମାଂଶୁ ସର୍ବସ୍ୱାନ୍ତ ହୋଇ ଉଠି ଆସିବାକୁ ଖୋଜୁଥାଏ । ନବାଗତ ଭଦ୍ରଲୋକ କହିଲେ, "ବାବୁ, ତମେ ତ ଆମ ବଜାର ବସାରେ ଥାଅ । ନିଅନା ଅଳ୍ପ କିଛି ମୁଁ ଦେଉଛି । ଦେଖ, ଯଦି ଫେରିପାର ।"

ହିମାଂଶୁ କହିଲା, "ଧନ୍ୟବାଦ, ଆଉ ଆଜି ନାହିଁ । ମୋର ଆଜି ହାରିବା ଯୋଗ ।"

"ଯୋଗ ଫୋଗ କିଛି ନୁହେଁ । ଉଦ୍‌ଯୋଗିନଂ ପୁରୁଷସିଂହମୁପୈତି ଲକ୍ଷ୍ମୀଃ । କେତେ ଦେବି କହ ?"

"ଆପଣଙ୍କ ଅନୁଗ୍ରହ ପାଇଁ ଅଶେଷ ଧନ୍ୟବାଦ । ଆପଣଙ୍କଠାରୁ ଋଣ ନେଇ ଜିଣି ନ ପାରିଲେ ପରିଶୋଧର ବାଟ ଜମା ଥିବ ନାହିଁ," କହି ହିମାଂଶୁ ଏକୁଟିଆ ପଦାକୁ ବାହାରି ଦେଖେ, ଅପରିଚିତ ଭଦ୍ରଲୋକ ତାଙ୍କ ପଛ ଲାଗି ରହିଛନ୍ତି ।

ସେ ପାଖକୁ ଆସି ପଚାରିଲେ, "କେତେ ଦିନ ହେଲା ଏଠାକୁ ଆସିଛ ?"

"ଏଇ ତ ସେଦିନ ।"

"ଉଦ୍ଦେଶ୍ୟ ପଚାରିପାରେ ?"

"ରୋଜଗାର ଆଶାରେ ।"

"କାମ କରିବ ?"

"ନ ହେଲେ ଘର ଛାଡ଼ି ଏତେ ବାଟ ଆସନ୍ତି କିଆଁ ?"

"କଣ କାମ କରିବ ?"

"ଯାହା ମୋର ବ୍ୟବସା ଶିଖିବା, ଯହିଁରେ ଅଳ୍ପ ଦିନ ମଧ୍ୟରେ ଲକ୍ଷ୍ମୀର ଶୁଭଦୃଷ୍ଟି ପାଇପାରେ । ମୋର ଅଗାଧ ଟଙ୍କାର ଲୋଡ଼ା କି ନା ।"

"ଅପରକୁ ଲକ୍ଷ୍ୟ କରି
ନିକ୍ଷେପ୍ତ ଯେ ଶର
ବାଜିଲେ ତା ଗାଏରେ ବନ୍ଧ ହୁମାଦ୍, ଶିଖର ।

ବେଶ୍ ବେଶ୍, ଏପରି ଉଚ୍ଚ ଆଶା ନ ଥିଲେ ମଣିଷ କେବେ ଜୀବନରେ ଉନ୍ନତି କରିପାରେ ? ତମର କୌଣସି ଆପତ୍ତି ନ ଥିଲେ, ସିମିତ କାମଟିଏ ମୁଁ ଯୋଗାଡ଼ କରିଦେବି । ତମକୁ କେଉଁ ଭାଷା ଜଣାଅଛି ?"

"ଓଡ଼ିଆ, ବଙ୍ଗଳା, ହିନ୍ଦି ଏବଂ ଇଂରାଜି ।"

"ଓ, ତେବେ ତ ଜଣେ ପଣ୍ଡିତ ଲୋକ, ଏଥି ବାଜ୍‌ଟି ନାଅନ୍ତୁ । କାଲି ସକାଳେ ରାଣୀବଜାର ନିକଟରେ ଥିବା ବ୍ଲେକ ବାଜ୍ କମ୍ପାନୀର ଦୋକାନରେ ଯାଇ ମୋ ସଙ୍ଗରେ ଦେଖା କରିବ । ସେଠାରେ 'ନିଷ୍ଟସ୍ତୁ' କାମରୁ ଯୋଗାଡ଼ ହୋଇଯିବ । ବସା ଶୋଭ୍ୟେଢ଼ାଗନ ପେଗଡ଼ାର ପଶ୍ଚିମ ପଟ ଗଳିରେ ତ ?"

"ଆଜ୍ଞା, ହଁ ।"

"ଭଲ, ମୁଁ ମଧ୍ୟ ସେଇ ବାଟେ ଦେଇ ଯିବି ।"



ଗତ ରାତିର ପ୍ରସ୍ତାବମତେ ହିମାଂଶୁ 'ବ୍ଲେକ ବାକ୍ କମ୍ପାନୀର' ଦୋକାନକୁ ବାହାରି ପଡ଼ିଲା । ଘଣ୍ଟାଏ କାଳ ଘୂରି ଘୂରି ଦୋକାନରେ ପହଞ୍ଚି ଦେଖେ, ସେତେବେଳେ ଯାଏ ଦୋକାନ ଖୋଲି ହୋଇ ନାହିଁ । ଦୁଆରେ ପହରା ଦେଉଛି ଜଣେ ବୁଢ଼ା ଦରଉଆନ୍ । ହିମାଂଶୁ ପାଖକୁ ଯାଇ ପଚାରିଲା, (ଅବଶ୍ୟ ହିନ୍ଦିରେ) "ଦୋକାନ ଖୋଲିବାକୁ ଡେରି କେତେ ?"

ଦରଉଆନ୍ କହିଲା, "ପ୍ରାୟ ଘଣ୍ଟାଏ—ମେନେଜର ସାହେବ ଠିକ୍ ଦଶଟା ବେଳେ ଆସି ଦୋକାନ ଖୋଲନ୍ତି ।"

ହିମାଂଶୁ ସେଇଠାରେ ଛିଡ଼ାହୋଇ ରହିଲା । ଆକୁଳ ଅଧୀରତା ତାକୁ ପଦେ ଅଡ଼ୁ ଦୃଷ୍ଟିବାକୁ ଦେଲା ନାହିଁ । ଆଜି ଗୋଟାଏ କିଛି ବ୍ୟବସ୍ଥା ନ କଲେ ତାର ଦିନ ଚଳାଇବା ଯେ କଠିନ ହେବ । ବାବୁଟିକୁ ଛିଡ଼ାହୋଇ ରହିବାର ଦେଖି ଦରଉଆନ୍ ଗୋଟିଏ ଚୌକି ଆଣି କହିଲା, 'ବସିବେ ବାବୁ ?'

ଶାନ୍ତ ହିମାଂଶୁ ତତ୍କ୍ଷଣାତ ବସିପଡ଼ି ପଚାରିଲେ, "ଦୋକାନଟି କେମିତି ?"

"ଖୁବ୍ ଭଲ ବାବୁ ସାହେବ ! ଆପଣ କିଛି ଅର୍ଡର ଦେବେ ନା କଣ ?"

"ନା, ମୁଁ ଗୃହକର୍ତ୍ତାର ସନ୍ଧାନରେ ବାହାରିଛି ।"

"ଗୃହକର୍ତ୍ତା କଣ ଖାଲି ଅଛି ଏଠି ?"

"କାଲି ତ ମୋତେ ରାଓ ସାହେବ ଆସିବା ପାଇଁ କହିଛନ୍ତି ।"

"ସୁଭା ରାଓ ?"

"ହିଁ, ଏସ୍. ସୁବା ରାଓ ।"

"ଓଃ, ସିଏ ତ ଜଣେ ମାଲିକ, ତେବେ ଆପଣଙ୍କ ଗୃହକର୍ତ୍ତାର ଖବର କଣ ?"

"ଠିକ୍ ସମୟରେ ବେତନ ମିଳେ ତ ?"

"ମାସ ପୂରୁ ପୂରୁ ଟଙ୍କା, ତା ପରେ ଭଲ କାମ କଲେ ପୁଣି ବକ୍ସିସ୍ ରହିଛି । ଏଇ ତ ଗଲା ମାସରେ ମୁଁ ତିନି ଦଫାରେ ପ୍ରାୟ ଅଢ଼େଇ କୋଡ଼ି ଟଙ୍କା ବକ୍ସିସ୍ ପାଇଲି ! ସୁବା ସାହେବ ଙ୍କ ଅୟ୍ୟାର ସାହେବ ଦୁହେଁ ଯାକ ବଡ଼ ଦୟାଳୁ ବାବୁ ! କର୍ମଚାରୀମାନଙ୍କୁ ବଡ଼ ଭଲ ପାଆନ୍ତି—ଠିକ୍ ଘର ପିଲା ପରି ।"

"କେତେ ଟଙ୍କା ବେତନ ପାଅ ?"

"ମାସକୁ ପଚାଶ ଟଙ୍କା ।"

ପଛପଟରୁ କାନ୍ଧରେ ହାତ ପଡ଼ିଲା । ହିମାଂଶୁ ଫେରି ଦେଖେ, ଗତ ରାତିର ପରିଚିତ ଏସ୍. ସୁବା ରାଓ । ରାଓ ସାହେବ ହସି ହସି କହିଲେ, "ମୁଁ ଆପଣଙ୍କ ବସା ହୋଇ ଆସିଲି । ଭାବିଲି, ନୂଆ ଲୋକ—ଦୋକାନଟା ପାଇବେ କି ନା— ।"

"ମୁଁ ପ୍ରାୟ ଘଣ୍ଟା ଦେଢ଼ ହେଲା ବସାରୁ ବାହାରି ପଡ଼ିଛି । ଆପଣଙ୍କ ଦେଇଥିବା ଠିକଣା ଧରି ଖୋଜି ଖୋଜି ଏଠାରେ ଆସି ଶୁଣିଲି, ଆପଣ ଆସି ନାହାନ୍ତି ।"

ସ୍ରଓ ସାହେବ ପକେଟରୁ ଗୃହ ଚାବି ଦରଜଆଡ଼୍କୁ ଧସ୍ତଇଦେଲେ। "ଆସନ୍ତୁ" କହି ସୁବା ସାହେବ ଦୋକାନକୁ ଚାଲିଲେ—ପଛେ ପଛେ ଗଲେ ହିମାଂଶୁ ଦାସ। ସ୍ରଓ ସାହେବ ପଚାରିଲେ, "ଦରଖାସ୍ତ ଆଣିଛନ୍ତି ?"

"ଆଜ୍ଞା ହଁ—" କହି ହିମାଂଶୁ ଦରଖାସ୍ତଟି ବଢ଼ାଇଦେଲେ। ଚେୟାରରେ ଢୁକେଇଯାଇ ବସିପଡ଼ିଲେ—ଦରଖାସ୍ତଟି ପଢ଼ିସାରି ସ୍ରଓ ସାହେବ ହସି ହସି କହିଲେ, "ଠିକ ଅଛି—ଆପଣ ଟିକିଏ ଅପେକ୍ଷା କରନ୍ତୁ, ମୁଁ ଅଫିସର ସାହେବଙ୍କ ସଙ୍ଗରେ ଥରେ ଦେଖା କରି ଆସେଁ" କହି ସେ ଫୋନ୍ କଲେ—। ଉତ୍ତର ପାଇବା ମାତ୍ରକେ 'ଠିକେ ଆସେଁ' କହି ଉପରକୁ ଚାଲିଗଲେ ସେ। ବସି ରହିଲେ ବିଚରା ହିମାଂଶୁ ଏକୁଟିଆ, ପ୍ରାୟ ପନ୍ଦର ମିନିଟ। ନୀରବରେ ବସି ବସି ଅଧୀର ହୋଇପଡ଼ିଲେଣି—କେତେ ବସିବ ? ପନ୍ଦର ମିନିଟ ପନ୍ଦର ଘଣ୍ଟା ପରି ମନେ ହେଉଛି ତାର। ଉଠିଯାଇ ବାରନ୍ଦାରେ ଛିଡ଼ାହେଲେ। ବଢ଼େଇମାନେ କାଠସବୁ ଖଟ୍‌ଖାଟ୍ କଟାକଟି କରି ଝନଝପଟ ପେଲ୍ ଲଗୁଛନ୍ତି—ସେ ପଟରେ କେବଳ ଅର୍ଡ଼ର ସପ୍ଲାଇ କରୁ ହୁଏ। ପଛଆଡ଼ୁ ଗୋଟିଏ ବାଳକ ଆସି କହିଲା, "ବାବୁ ! ସାହେବ ଡାକୁଛନ୍ତି ଆପଣଙ୍କୁ।"

ହିମାଂଶୁ ଦୁରୁ ଦୁରୁ ଛାତିରେ ଉପରକୁ ଉଠିଲେ। କଣ ହେବ, ମାଲିକ ରଖିବାକୁ ମଙ୍ଗିବ କି ନା, କଣ କାମ କରିବାକୁ କହିବ, ବେତନ କେତେ ଦେବ, କିଛି ବୁଝିହେଉ ନାହିଁ। ଉପରକୁ ଯାଇ ଦେଖେ—ସ୍ରଓ ସାହେବ ଓ ଆଉ ଜଣେ ବସିଛନ୍ତି। ସମ୍ଭବତଃ ଇଏ ହିଁ ଅଫିସର ସାହେବ ହେବେ। ନମସ୍କାର କରି ଭିତରକୁ ପଶିବା ମାତ୍ରକେ ଅଫିସର ସାହେବ ପଚାରିଲେ, "ଏ କାମ ଖୋଜୁଥିଲେ ?"

"ଆଜ୍ଞା ହଁ।"

"ଶୁଣିଛି, ଗୀତ ଗାଇପାରିବ ଜଣାଅଛି।"

"ଆଜ୍ଞା ସାମାନ୍ୟଭାବରେ।"

ହିନ୍ଦ ଉଚ୍ଚାରଣ ଦେଖୁଛି ଭାରି ସୁନ୍ଦର ତ, ଗୀତ ଗାଇ ଆସେ ?"

ହିମାଂଶୁ ଅବାକ୍। ଇଏ କଣରେ ବାପ, ଚାକିରି କରିବାକୁ ଆସି ଏଠାରେ ପୁଣି ଗାଇବାଜଣାର ଲୋଡ଼ା କଅଁ ? କହିଲେ, "ଆଜ୍ଞା, ସାମାନ୍ୟ-ଭାବରେ ଜଣା ଅଛି।"

"ଗୀତ କିମ୍ବା ବଜାଇବା ଜାଣିଛ ?"

"ଆଜ୍ଞା, ନା, ଇଂରେଜ ଗୀତ ଜମା ଆସେ ନାହିଁ ।"

"ସାହିତ୍ୟିକ ଆଲୋଚନା ଅଛି ?"

"ସାମାନ୍ୟ ।"

"ବଙ୍ଗଳା ସାହିତ୍ୟ ?"

"ପଢ଼ିଛି ।"

"କା'ର କା'ର ଲେଖା ବେଶି ଭଲ ଲାଗେ— ?"

"ରବୀନ୍ଦ୍ରନାଥ,ସତ୍ୟେନ ଦତ୍ତ, ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟ, ନରେଶ-ସେନ୍—ଆଧୁନିକ ଯୁଗର ପ୍ରାୟ ଅଧିକାଂଶ କବି ଓ ଲେଖକଙ୍କ ଲେଖା ପଢ଼ିଛି ମୁଁ ।"

"ବେଶ୍ ବେଶ୍, ଅଚ୍ଛା ଖେଳ ?"

"ଫୁଟବଲ, କ୍ରିକେଟ୍, ଟେନିସ୍, ହକି— ।"

"ବ୍ୟାଡ଼ମିଣ୍ଟନ ?"

"ପାରେ ।"

"ବହୁତ ଆଚ୍ଛା ଚଳିବ । କିମିତି କାମ କରିବାକୁ ମନ ? ଏଇ ସେ ପଟରେ ଆମର Order Supply ବିଭାଗ ରହିଛି । ସେଠାରେ ଜଣେ କିରାଣି ଦରକାର, ବେତନ ପଚିଶ ଟଙ୍କା ଚଳିବ ?"

ହିମାଂଶୁ ସ୍ତବ୍ଧ ହୋଇ ରହିଲା ! କଣ କହିବ ସେ ? ଏଇ ଟଙ୍କାର ଆଶାରେ କି ଜନ୍ମଭୂମିର ସରଳ ପଥ ଛାଡ଼ି ଧାଇଁ ଆସିଛି ସେ ସୁଦୂର ବର୍ମାକୁ ! ଦେଶରେ ଥିଲେ ତ ଆଜି ନ ପଢ଼ି ମଧ୍ୟ ସେ ତିରିଶ ପଚିଶ ଟଙ୍କା ମାସକୁ ଅକ୍ଲେଶରେ ରୋଜଗାର କରିପାରନ୍ତା । କଣ କରିବ ? ନାହିଁ କଲେ ଦୁଇ ଚାରି ଦିନ ପରେ ଉପବାସରେ ଦିନ କଟାଇବାକୁ ହେବ । ଆଜି ତ ପୁଞ୍ଜିପାଟା କିଛି ନାହିଁ ଯେ, ଦୁଇ ଚାରି ଦିନ ଦେଖାଯାଉ କହି ଅପେକ୍ଷା କରିବ ।

ହିମାଂଶୁକୁ ନୀରବ ଦେଖି ନରସିଂହ ଦାସ୍ ଆୟାର ହସି ହସି ପଚାରିଲେ, "କଣ ବାବୁ, ପସନ୍ଦ ହେଉ ନାହିଁ ? କହ କହ—ସତ କଥା କହିବାକୁ ଭାବନା କଣ ? ଯା ପାଖରେ ଚାକିରି କରିବ, ତା ଠାରେ ଖୋଲା-ଖୋଲି କଥାବାର୍ତ୍ତା କରିବା ଉଚିତ । ଆଚ୍ଛା ସତ କହିଲ, ଏ ସୁଦୂର ବିଦେଶକୁ ଆସିବାରେ ତମର ଉଦ୍ଦେଶ୍ୟ କଣ ?"

"ରୋଜଗାର ପାଇଁ ।"

"ତା ତ ବୁଝିଲି; କିନ୍ତୁ ୬୪୦୯ ବେତନରୁ ବେଶି ତ ବର୍ତ୍ତମାନ କେହି ଦେବେ ନାହିଁ । କେତେ ହେଲେ ରହିପାର ?"

"ଦେଖନ୍ତୁ, ଗୃଲଶ ପଚିଶ ଟଙ୍କା ବେତନ ଆମ ଦେଶରେ ଇଚ୍ଛା କଲେ ମୁଁ ଅକ୍ଲେଶରେ ପାଇ ପାରନ୍ତି—ଆଜି ଦୁଇ ତିନି ବର୍ଷ କଲେଜରେ ଥିଲେ ମୋତେ ସତୁରି ଅଶୀ ମିଳୁଥାନ୍ତା; କିନ୍ତୁ ମୋର ଉଦ୍ଦେଶ୍ୟ ଶହେ ପଚିଶ ନୁହେଁ । ମୁଁ ଆସିଛି କୌଣସି ବ୍ୟବସାୟୀ ପାଖରେ......ବେତନରେ ରହି ଯଦି କିଛି ଶିଖିପାରେ । ସ୍ୱାଧୀନ ଭାବରେ କାମ କରିବି, ନଚେତ୍ ମୋର ଉଦ୍ଦେଶ୍ୟସିଦ୍ଧି ହେବ ନାହିଁ । ମୋର ଯେତେ ଟଙ୍କାର ଲୋଡ଼ା, ପଚିଶ ଷାଠିଏ ଟଙ୍କାରେ ଚାକିରି କଲେ ତାହା ପୂରଣ କରିବାକୁ ମୋର ସମସ୍ତ ଜୀବନଟି କଟିଯିବ । ଅଥଚ ଦୁଇ ଏକ ବର୍ଷ ମଧ୍ୟରେ ମୋର ବିପୁଳ ଅର୍ଥର ପ୍ରୟୋଜନ, ତେଣୁ ମୁଁ ଭାଗ୍ୟ ଉପରେ ନିର୍ଭର କରି ଅନ୍ଧ ପରି ଧାଇଁ ଆସିଛି ସୁଦୂର କଲିକତାକୁ ।"

"ଉଚ୍ଚ ଅକାଂକ୍ଷା ନ ଥିଲେ ମଣିଷ ଉନ୍ନତି କରିପାରେ ନା କେବେ । ଖୁବ୍ ଭଲ କଥା, ଆମ ଏଠାରେ ସେହିପରି ଗୋଟିଏ କାମ ଅଛି; କିନ୍ତୁ ଜାଣ ତ ଯେଉଁଥିରେ ଯେତେ ଦାୟିତ୍ୱ, ସେଥିରେ ହିଁ ତେତେ ରୋଜଗାର । ଆମ କଥାରେ ରାଜି ହେଲେ, ତମର ସେ ଉଦ୍ଦେଶ୍ୟ ସଫଳ ହୋଇପାରେ । କିନ୍ତୁ କାମ ଧରି ନେବା ପୂର୍ବରୁ ଭଲ କରି ଭାବି ଦେଖିବ । କାମରେ ହାତ ଦେଇ ନାହିଁ କଲେ ଭବିଷ୍ୟତ୍ ବଡ଼ ଖରାପ; ଇପିଡ଼ି କି ପ୍ରାଣ ନେଇ ଟଣା ଓଟରା ପଡ଼ିବ ।"

ଉଦ୍ଦେଶ୍ୟ ସଫଳ ହେବ । ଆଉ କିଛି ଭାବିବାରେ ହିମାଂଶୁର ପ୍ରୟୋଜନ ନାହିଁ । ତତ୍କ୍ଷଣାତ୍ ସେ କହି ଉଠିଲା, "ମୁଁ ପ୍ରସ୍ତୁତ—ମୋ ଉଦ୍ଦେଶ୍ୟ ସାଧନ ପାଇଁ ମୁଁ ପ୍ରାଣ ମଧ୍ୟ ଦେବାକୁ କୁଣ୍ଠିତ ନୁହେଁ ।"

"ଶୁଣି ଖୁସି ହେଲି; କିନ୍ତୁ ଅପରିଚିତ ଜଣେ ଲୋକକୁ ଆମେ ତ ସମ୍ପୂର୍ଣ୍ଣ ବିଶ୍ୱାସ କରି ପାରୁ ନାହୁଁ, ବାବୁ !"

"ଯହିଁରେ ବିଶ୍ୱାସ ହେବ, ମୁଁ ତା କରିବାକୁ ପ୍ରସ୍ତୁତ, କେବଳ ଆଦେଶର ଅପେକ୍ଷା ମାତ୍ର ।"

"ଗୁର୍ଡ ସାହେବ ଅଣାଇଲେ ।"

ଗୁର୍ଡ ସାହେବ ଅନ୍ୟ କୋଠରୀକୁ ଚାଲିଗଲେ । ଆୟାର ସାହେବ କହିଲେ, "ଅନ୍ତତଃ ଟ୫୦୦୦ଙ୍କାର ଜାମିନ୍ ଦେବାକୁ ପଡ଼ିବ ।"

"ପାଞ୍ଚ ହଜାର ଟଙ୍କାର ଜାମିନ ଏ ଅପରିଚିତ ଦେଶରେ କାହୁଁ ପାଇବି ମୁଁ ?"

"ତମେ ରାଜି ହେଲେ ମୁଁ ତାର ବ୍ୟବସ୍ଥା କରିପାରେ । ଜାମିନ ମାନେ—ଯହିଁରେ ଆମ ଅମତରେ କିଛି କାମ କରି ନ ପାର ।"

"ମୁଁ ପ୍ରସ୍ତୁତ ଅଛି; କିନ୍ତୁ ବେତନ କଣ ମିଳିବ ?"

"ବାବୁ ବେତନ ବେତନ ହେଉଛ, ଯେଉଁ କାମରେ ତମକୁ ନିଯୁକ୍ତ କରି ଯାଉଛି, ଯଦି ତା ସଫଳ ହୁଏ, ଅନ୍ତତଃ କୋଡ଼ିଏ ହଜାର ଟଙ୍କାରୁ କମ୍ ମିଳିବ ନାହିଁ । ସମ୍ଭବତଃ ଅଳ୍ପ ଦିନ ମଧ୍ୟରେ ଏକାଠି ପାଇଯିବ । ତମେ ହେବ ଆମ ଫାର୍ମର ଜଣେ ଅଂଶୀଦାର । ତମ ରହିବା ଘର, ଖାଇବା ପିଇବା ଖରଚ, ଚାକରବାକରର ବେତନ, ଯାବତୀୟ ଖର୍ଚ୍ଚ କୋମ୍ପାନି ଦେବେ । ତା ଉପରେ ହିସାବପତ୍ର ରଖିବା ପାଇଁ, ଚିଠିପତ୍ର ଲେଖାଲେଖି—ସବୁଥିରେ ସାହାଯ୍ୟ କରିବା ପାଇଁ ସେକ୍ରେଟେରି ଭଳିଆ ଜଣଙ୍କୁ ଦିଆଯିବ । ସେ ନାମମାତ୍ର ସେକ୍ରେଟେରି, ପ୍ରକୃତରେ ସେ ହେବ ତମ adviser ।"

ସୁବା ଗୁର୍ଡ ଆଣି ଟ ୫୦୦୦୯ ର ପାଞ୍ଚ କିତା ନୋଟ ଆୟାର ସାହେବଙ୍କୁ ଧରାଇ ଦେଲେ । ଆୟାର ସାହେବ ପଚାରିଲେ, "କଣ ବାବୁ ! ଭଲ କରି ଭାବିଛ ନା ?"

"ମୁଁ କହୁଛି, ମୋର ଉଦ୍ଦେଶ୍ୟ ସଫଳ ପାଇଁ ମୁଁ ପ୍ରାଣପଣ ଚେଷ୍ଟା କରିବି ।"

"ଦୁଃଖ କରିବ ନାହିଁ ବାବୁ, ପ୍ରଥମରେ ଇମିତି ସମସ୍ତେ କହନ୍ତି; କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଅନ୍ୟରୂପ ଦେଖାଯାଏ । ମୁଁ ଭଲ କରି କହୁଛି, ଚାକିରିଟି ଥରେ ହାତକୁ ନେଲେ ଆଉ ନା କହିବାକୁ ଜମା ବାଟ ନ ଥିବ ।"

"ଆପଣ କାହିଁକି ମୋତେ ଅବିଶ୍ୱାସ କରୁଛନ୍ତି ?"

"ଆଜିକାଲିକାର ପିଲା କି ନା ! ତମମାନଙ୍କର ଘଡ଼ିକି ଘଡ଼ି ମତ ପରିବର୍ତ୍ତିତ ହୁଏ । ହୁଏ ତ କହି ବସିବ, ଏଟା ଅନ୍ୟାୟ—ମୁଁ ପାରିବି ନାହିଁ ।"

"ମୋତେ କଣ କାମ କରିବାକୁ ହେବ କହନ୍ତୁ, ମୁଁ ପ୍ରସ୍ତୁତ ।"

"ଗୋଟିଏ କଥାରେ କହୁଛ ? adviser ଯେତେବେଳେ ଯାହା କହୁବେ, ତାହା ହିଁ କରିବାକୁ ହେବ । ଅସ୍ୱୀକାର କଲେ ମୃତ୍ୟୁ ଯେମିତି ସୁନିଶ୍ଚିତ । କାମ ହାସଲ କଲେ ତମ ଉଦ୍ଦେଶ୍ୟସିଦ୍ଧି ମଧ୍ୟ ଠିକ୍ ସେମିତି ସୁନିଶ୍ଚିତ । ମାସେ ଦେଢ଼ ମାସ ମଧ୍ୟରେ ହଜାର କୋଡ଼ିଏ ଟଙ୍କା ଯେ ପାଇବ, ସେ ବିଷୟରେ ମୁଁ ଗେରେଣ୍ଟି ଦେଇପାରେ । ତେବେ ଏକ ବର୍ଷ ପୂର୍ବରୁ ନୋଟିସ୍ ନ ଦେଇ adviserର ହାତରୁ ମୁକ୍ତି ପାଇବ ନାହିଁ । ଦେଖ, ରାଜି ଅଛ ?"

"ମୁଁ ପ୍ରସ୍ତୁତ ଅଛି ।"

"ବେଶ୍, ତେବେ ଏହି ନୋଟ୍ ସିଟିରେ ନିଜ ନାମ ଲେଖିଦିଅ ।"

ତତ୍‌କ୍ଷଣାତ୍ ନିଜ ନାମ ଗୋପନ କରି 'ଧୂର୍ଜଟି ପ୍ରସାଦ ଦାସ' ଲେଖି ହିମାଂଶୁ ପଚାରିଲା,—

"କଣ କାମ କରିବାକୁ ହେବ ?"

"କାଲିଠାରୁ ତମକୁ ଅଲଗା ବସାଘର କରି ଦିଆଯିବ । ତମେ ଏ ସବୁ କଥା କାହାରିଠାରେ କେବେ କିଛି ପ୍ରକାଶ କରିବ ନାହିଁ । ତମ ବସାରେ କହିଆସିବ, 'ଦେଶକୁ ଯାଉଛି । ଏଠାରେ ବିଶେଷ କିଛି ସୁବିଧା କରି ପାରିଲି ନାହିଁ ।' ତମକୁ କାଲିଠାରୁ ରାଜକୁମାର ଧୂର୍ଜଟିପ୍ରସାଦ ଦାସ ନାମରେ ପରିଚୟ ଦେବାକୁ ହେବ । ସବୁବେଳେ ମନେ ରଖିଥିବ, ତମେ ରାଜକୁମାର; ଦାନ, ଧ୍ୟାନ, ଦକ୍ଷିଣାରେ କମା କାର୍ପଣ୍ୟ କରିବ ନାହିଁ । ସମସ୍ତ ଖରଚ କୋମ୍ପାନି ଦେବେ । ତା ପରେ ଯାହା କିଛି କରିବା ଦରକାର, ତମ ସେକ୍ରେଟେରି ସବୁ ବୁଝାଇ ଦେବେ । ବୁଝିଲ ? ରାଓ ସାହେବ, ଏହାଙ୍କ ପାଇଁ ଭଲ ଭଲ ପୋଷାକ କିଛି ଦରକାର । ଘର ତ ଠିକ୍ କରାହୋଇଛି । ପାଞ୍ଚ ଜଣ ଚାକର, ଜଣେ ପାଚକ, ଦରଜଆନ ଦୁଇ ଜଣ ଯୋଗାଡ଼ କରି କାଲି ତାଙ୍କ ବସାକୁ ନେଇଯିବ । ତମେ ଜିନିଷ ପତ୍ର ନେଇ ଠିକ ସାତ ବାଜିଲା ବେଳକୁ ଆସିବ ବାବୁ, ବୁଝିଲ ?"

"ହଁ" କହି ହିମାଂଶୁ ବିଦାୟ ନେଲା ସତ; କିନ୍ତୁ ବୁଝିଲା ନାହିଁ, କେଉଁ ଦୁରନ୍ତ ମାକଡ଼ସା ଜାଲରେ ମାଛି ପରି ଗୋଡ଼ ଦେଲା ଆଜି ସେ ।

ଏଠାରୁ ତାର ଯେ ମୁକ୍ତି ନାହିଁ । ଯେଉଁ ଟ ୫୦୦୦ ୯ର ନୋଟ ସିଠିରେ ସେ ଦସ୍ତଖତ କଲା, ସେଗୁଡ଼ିକ ସମସ୍ତ ଜାଲ ନୋଟ । ସେଗୁଡ଼ିକ ଉପରେ ଲେଖା ହେଲା—Sold to Black Bird & Co. ହିମାଂଶୁ ଯେଉଁ ମୁହୂର୍ତ୍ତିରେ କଥାର ଅବାଧ ହେବ, ସେହି ମୁହୂର୍ତ୍ତିରେ ଜେଲ ତାର ସୁନିଶ୍ଚିତ । ତରୁଣ ଯୁବକ କଣ ବୁଝିବ ଏ ଗୁଳବଣ୍ଟୀ ଦସ୍ୟୁଦଳର ଛଳନା ? ଅଗକୁ ଛ ମାସ କାଳ ସେମାନେ ଏହିପରି ଜଣେ ଶିକ୍ଷିତ ସୁନ୍ଦର ଯୁବକର ସନ୍ଧାନରେ ଘୂରି ବୁଲୁଥିଲେ । ଅଜ ଗୁଣ୍ଡର ପାଇଁ, ନିଜ ଉଦ୍ଦେଶ୍ୟସିଦ୍ଧି ପାଇଁ ହିମାଂଶୁ ଯେପରି ଖୁସି, ତାଠୁଁ ଢ଼େର ବେଶି ଖୁସି ଚତୁରଚୂଡ଼ାମଣି ଅଯ୍ୟାର ସାହେବ ଓ ସହକାରୀ ବୁଢ଼ୀ ଗଣ୍ଡ ।



ଆଲ୍ଲାଉଦ୍ଦିନର ଅଶ୍ଚର୍ଯ୍ୟ ଆଲୁଅ ପରି ହଠାତ୍ ହିମାଂଶୁର ସମସ୍ତ ବେଶଭୂଷା, ଘରଦ୍ୱାର, ଗୁଲିଚଳଣ ଏକାବେଳକେ ବଦଳିଗଲା । ଆଉ, ଆଜ ତାକୁ ଦେଖି ଭାଗ୍ୟାନ୍ୱେଷୀ ଯୁବକ ବୋଲି ମନେ ହେଉ ନାହିଁ । ଠିକ୍ ଯେପରି ସୌଭାଗ୍ୟର ବରପୁତ୍ର ସେ ! ହିମାଂଶୁର ଗୁଲିଚଳଣରେ ଅନ୍ୟର କଥା ପଛକୁ ଥାଉ, ନିଜେ ବୁଢ଼ା ସାହେବ ଅବାକ ହୋଇ ରହିଲେ । ସେ ନିଜେ ହୁଏ ତ ଏପରି ଅଭିନୟ କରି ପାରନ୍ତେ କି ନା, ସନ୍ଦେହ । ସନ୍ଧ୍ୟା ୭ଟାବେଳେ ଆୟାର ସାହେବ ଅସି ଦରଜଆନ୍ ହାତରେ Visiting Card ପଠାଇଦେଲେ । ତତ୍କ୍ଷଣାତ୍ ତାଙ୍କୁ ଉପରକୁ ଯିବାର ହୁକୁମ ଅସିଲା । ଅୟାର ସାହେବ ଯାଇ ସେକ୍ରେଟେରିଙ୍କୁ ପଚାରିଲେ, "ମହାରାଜକୁମାର ?"

"ବାହାରକୁ ଯିବାପାଇଁ ପୋଷାକ ପରିବର୍ତ୍ତନ କରୁଛନ୍ତି ।"

"କିମିତ ଦେଖିଲ ?"

"ଆଶାତିରିକ୍ତ । ଏ ଜଣେ ଓସ୍ତାଦ ଲୋକ ।"

"ଭୁବନ ବାବୁ ଅସି ନାହାନ୍ତି ତ ?"

"ନା ।"

"ରକ୍ଷାହେଲା—ଏଣୁକ୍ଷଣି ଆସିବ; କିନ୍ତୁ ଚଞ୍ଚଳ ତମ ମହାରାଜ-କୁମାରଙ୍କୁ ପ୍ରସ୍ତୁତ ହେବାକୁ କହ । ଘରୁ ବାହାରିଲେଣି ସେ ?"

"ତମେ ଖବର ଦେଇଥିଲ ନା କଣ ?"

"ଖବର ଦେବି ବୋଲି ଯାଉଥିଲି;ସେଠାରେ ଯାଇ ଶୁଣିଲି,ଯୋଗୀନ୍ଦ୍ର ବାବୁ ସ୍ୱତଃ ପ୍ରଣୋଦିତ ହୋଇ ତାଙ୍କୁ ପଠାଉଛନ୍ତି, ମହାରାଜକୁମାରଙ୍କ ସୁବିଧା ଅସୁବିଧା ବୁଝିବା ପାଇଁ ।

"ଏତେ ଅନୁଗ୍ରହ ଯେ ?"

"ଓଃ, ଏଟା ବୁଝିପାରୁ ନାହୁଁ ? ଏହି ପ୍ରକାଣ୍ଡ ଘରଟି ମାସକୁ ୫୭୦୦୯ ଦେଇ କିଏ ଭଡ଼ା ନେବ ଏ ଅଞ୍ଚଳରେ କହିଲୁ ? ସହର ମଝିରେ ଥିଲେ ଅବା ଦୁଇ ଗୃହ ଜଣ ବ୍ୟବସାଦାର ମିଳିମିଶି ନିଅନ୍ତେ; କିନ୍ତୁ ସହର ବାହାରରେ କେବଳ ରହିବା ପାଇଁ ଏତେଗୁଡ଼ା ଟଙ୍କା ମାସକୁ ଦେବ କିଏ? ଘରଟି କିଣି ବୁଢ଼ା ଭାରି ମନମରା ହୋଇଥିଲା । ଲୋକଙ୍କ କଥାରେ କିଣି ସାରି ଦେଖେ ଯେ, ପଇସାଟିଏ ଲାଭ ନାହିଁ—କେବଳ ଖରଚ ! ଏତେ ଦିନ ପରେ ସେ ଘରୁ ଭଡ଼ା ମିଳିଲା । ତା ପରେ ପୁଣି ସେ ଜଣେ ମହାରାଜକୁମାର; ତାଙ୍କ ସମ୍ବାଦଟା ନେବା ଉଚିତ କଣ ? ସବୁ ବୁଝାଇ ପଢ଼ାଇ ରଖିଛୁ ତ ?"

"ତାକୁ ବୁଝାଇବାକୁ ହେବ ନାହିଁ । ସେ ମୋତେ କେତେ ଥର—।"

"ବେଶ, ଖୁବ୍ ସାବଧାନରେ ଚଳିବାକୁ ହେବ ।"

"ସେ ବିଷୟରେ ଅବହେଳା ହେଲା ନାହିଁ ।"

ଦରଉଆନ ଗୋଟିଏ ରୁପାର ଥାଳିରେ ପୁଣି Visting Card ଟିଏ ଆଣି ସେକ୍ରେଟେରି ସାହେବଙ୍କ ହାତରେ ଦେଇ ସଲାମ କରି ଛିଡ଼ା ହେଲା । ସେକ୍ରେଟେରି ସ୍ୱୟଂ ଅଭ୍ୟର୍ଥନା ପାଇଁ ତଳକୁ ଓହ୍ଲାଇ ଗଲେ—ଯୋଗୀନ୍ଦ୍ର ବାବୁଙ୍କର ଜ୍ୱାଇଁ ଭୁବନାନନ୍ଦ ବାବୁଙ୍କୁ ପାଛୋଟି ଆଣିବା ପାଇଁ ।

ରାୟ ବାହାଦୁର ଯୋଗୀନ୍ଦ୍ର ବାବୁ ସେ ଅଞ୍ଚଳରେ ଜଣେ ସୁବିଖ୍ୟାତ ଧନୀ । ବିଭିନ୍ନ ପ୍ରକାରର ଅନେକ ବ୍ୟବସାୟବାଣିଜ୍ୟ ତାଙ୍କର; କିନ୍ତୁ ବ୍ୟାଙ୍କ ବା ଟଙ୍କା କାରବାର ଦିଆନିଆ କରିବା, ମହଜୁଡ ରଖିବା, ହୁଣ୍ଡି

ପ୍ରକୃତର ବ୍ୟବହାର ହିଁ ତାଙ୍କର ପ୍ରଧାନ ବ୍ୟବସାୟ । ଯୋଗୀନ୍ଦ୍ର ବାବୁଙ୍କର ବିପୁଳ ସମ୍ପତ୍ତି ଭୋଗ କରିବା ପାଇଁ ଏକମାତ୍ର ଅବିବାହିତା ସୁନ୍ଦରୀ କନ୍ୟା ପ୍ରମିଳା ସୁନ୍ଦରୀ ଭିନ୍ନ ଅନ୍ୟ କେହି ନାହାନ୍ତି । ଆଦରଣୀ କନ୍ୟାପାଇଁ ଉପଯୁକ୍ତ ପାତ୍ରର ସନ୍ଧାନ ଚାଲିଛି ଅନେକ ଦିନରୁ; ମାତ୍ର ଯୋଗୀନ୍ଦ୍ର ବାବୁଙ୍କ ମନୋ-ମତ ନ ହେବାରୁ ଆଜିଯାଏ ବିବାହ ହୋଇ ନାହିଁ—ଅଧିକନ୍ତୁ ଶ୍ରୀ,ଭୂଷଣ ଭୁବନବାବୁଙ୍କର ପିତୃବିୟୋଗ ହେବା ପରେ, ଯେଉଁ ଦିନଠାରୁ ସେ ଆସି କ୍ଷେତ୍ରଶୁଦ୍ଧାନ୍ତ ଯୋଗୀନ୍ଦ୍ର ବାବୁଙ୍କ ଆଶ୍ରୟ ନେଲେ, ସେହି ଦିନରୁ ଯୋଗୀନ୍ଦ୍ର ବାବୁଙ୍କ ସ୍ୱାସ୍ଥ୍ୟ ଦିନକୁ ଦିନ ଖରାପ ହେବାରେ ଲାଗିଛି । ତାଙ୍କ ରୋଗ କଥା ଆଜିଯାଏ କେହି ସ୍ଥିର କରି ପାରୁ ନାହାନ୍ତି । ଅନେକ ଡ଼ାକ୍ତର କବିରାଜଙ୍କର ଔଷଧପତ୍ରରେ ମଧ୍ୟ କୌଣସି ଫଳ ହେଉ ନାହିଁ । ଶ୍ରୀ,ଭୂଷଣ ଭୁବନକୁ ସେ ବଡ଼ ସ୍ନେହ କରନ୍ତି । କେବଳ ଯୋଗୀନ୍ଦ୍ର ବାବୁଙ୍କର ଧର୍ମାନ୍ତରର ଗ୍ରହଣ ପାଇଁ ଭାଇ ଭାଇ କେହି କାହାରିକୁ ଦେଖିପାରୁ ନ ଥିଲେ ସିନା, ତାଙ୍କ ମୃତ୍ୟୁ ପରେ ଅଶ୍ରିତ ଶ୍ରୀ,ଭୂଷଣକୁ ବଡ଼ ଆଦରରେ ଗ୍ରହଣ କଲେ । ଏବେ ସେ ବେଙ୍କର କେସିଆର ବା ଖଜାଞ୍ଚି । ତାହାର ଉପରେ ସମସ୍ତ କାମ ଦେଖିବା ଭାର ନ୍ୟସ୍ତ ଅଛି । ଯେଉଁ ଅନୁପିମିଛି ସମ୍ବନ୍ଧ ଆସେ, ଗୋଟାଏ ନା ଗୋଟାଏ କାରଣ ଦେଖାଇ ଭୁବନ ତାହା ବାତିଲ କରାଇଦିଏ । ତେବେ ଅଳ୍ପ ଦିନ ହେଲା ମିରାଟ୍‌ରୁ ଗୋଟିଏ ସମ୍ବନ୍ଧ ଆସିଛି, ଯହିଁରେ ନାହିଁ କହିବାକୁ କୌଣସି ବାଟ ନାହିଁ । ଯୋଗୀନ୍ଦ୍ର ବାବୁଙ୍କ କର୍ମଚାରୀ ଯାଇ ଘରଦ୍ୱାର ସବୁ ଦେଖି ଆସିଛି । ବାସ୍ତବିକ ପ୍ରମିଳାର ଯୋଗ୍ୟପାତ୍ର ସେ, ସେ ବିଷୟରେ ସନ୍ଦେହ ନାହିଁ ।

ଭୁବନ ବାବୁ ଆସି ବୈଠକଖାନାରେ ବସିବା ମାତ୍ରେ ସେକ୍ରେଟେରି ଖବର ଦେବାପାଇଁ ମହାରାଜକୁମାର ପାଖକୁ ଚାଲିଗଲେ ଏବଂ ସଙ୍ଗେ ସଙ୍ଗେ ଫେରି ଆସି କହିଲେ, "ଟିକିଏ ପରେ ଆସୁଛନ୍ତି ସେ ।"

ସେକ୍ରେଟେରି ପଚାରିଲେ, "ରାୟବାହାଦୁରଙ୍କ ଦେହ କିପରି ?"

"ବିଶେଷ ଭଲ ନୁହେଁ ।"

"ଔଷଧ ଚାଲିଛି ?"

"ପ୍ରତ୍ୟହ ଦୁଇ ଟୋପା ।"

"ପାଗଳ, ପ୍ରତ୍ୟହ ଦୁଇ ଟୋପା ଲେଖାଏଁ ଦେଲେ ଯେ ଦୁଇ ମାସ ଯିବ ନାହିଁ । ସାବଧାନ, ଏତେ ଦ୍ରୁତ ଅଗ୍ରସର ହେବା ଉଚିତ ନୁହେଁ । କାଲିଠାରୁ ଟୋପାଏ ଦେବ ।"

"ସେ ଆଜ୍ଞେ ଯେ ଅକ୍ରୁର ଏକ ବିପଦ ଅସି ଜୁଟିଛି; ତେଣୁ ସିନା ଏ ଗୃହାଳୟ ।"

"ଅକ୍ରୁର ବିପଦ କଣ ?"

"ମଗୁଠିରୁ ସେ ପାଣିଟି ଆସିବା ପାଇଁ ବଡ଼ ଚଞ୍ଚଳ ହୋଇ-ଉଠିଛି ।"

"ଆରେ ଆସୁ ନା, ତାକୁ ଠିକ କରିନେବା ଉପାୟ ଅମ ହାତରେ ରହିଛି । କେବେ ଆସିବ ସେ ?"

"ଚାଠି ଗଲେ ।"

"ଗୃହ ପାଞ୍ଚ ଦିନ ପର ଚାଠି ହେବେ ନା ?"

"ବଡ଼ ବାପା ତ ବ୍ୟସ୍ତ ହେଉଛନ୍ତି । ତେବେ ଚାଠିଖଣ୍ଡିକ ଗୃହ ପାଞ୍ଚ ଦିନ ଅବଶ୍ୟ ଡେରି କରିଦେଇ ହେବ ।"

"ସବୁ ଠିକ ହୋଇଯିବ, ଭାବନା ନାହିଁ; କିନ୍ତୁ ଟଙ୍କା କେତେ ଯୋଗାଡ଼ ହେଲା ?"

"ଦଶ ହଜାର ଟଙ୍କା ନେଇ ଆସିଛି ।"

"ଏଥିରେ କଣ ହେବ ?"

ଅର୍ଦ୍ଧେକ ଖରଚ ଚଳିବ କି ନା, ସନ୍ଦେହ । ତା ପରେ ପୁଣି ମହାରାଜ-କୁମାର ଦଶଟି ହଜାର ଟଙ୍କା ଅଗ ନ ଧରିଲେ କାମରେ ହାତ ଦେବେ ନାହିଁ । ସୁତରାଂ ସମ୍ପ୍ରତି ତମ ବେଙ୍କରେ ହଜାର ପଚାଶ ଟଙ୍କା ଜମା କରି ନେଲେ ସବୁ ଗୋଳ ତୁଟିଯାଏ । ଦେଖିବ, କେଡ଼େ ସହଜରେ ତମ କାମ ହାସଲ ହୋଇଯିବ । ଆଉ ଗୋଟିଏ କଥା; କୁମାର ବାହାଦୁରଙ୍କୁ ଏସବୁ କଥା କିଛି କହିବେ ନାହିଁ; ମୁଁ ତାଙ୍କୁ ଚଳାଇ ନେବି । ଭିତରର କଥା ଜାଣି ପାରିଲେ ସେ କେବେ ମଙ୍ଗିବ ନାହିଁ ।"

"ନା, ମୁଁ ତାକୁ କିଛି କହିବ ନାହିଁ। କିନ୍ତୁ ଏତେ ଟଙ୍କା ହଠାତ୍ ବେଙ୍କରେ ଜମା କେଉଁଠି କମିଛି ? ପ୍ରତ୍ୟହ ସନ୍ଧ୍ୟାରେ ତ ରାୟ ବାହାଦୁର ସମସ୍ତ ଟଙ୍କାପଇସାର ହିସାବପତ୍ର ନିଜେ ଦେଖନ୍ତି ।"

ଆୟାର ସାହେବ କହିଲେ, "ଦେଖନ୍ତୁ, ସେଥିପାଇଁ ଭାବନା ନାହିଁ, ମୁଁ ସବୁ ଠିକ୍ କରି ରଖିଛି ଯେ—।"

"ଆପଣ ଠିକ କରି ରଖିଛନ୍ତି ?"

"ନିଶ୍ଚୟ ! ଅଚ୍ଛା, ସତ କରି କହିଲ, ଆପଣମାନଙ୍କ ବେଙ୍କ୍‌ରେ ଦିନେ ଦୁଇ ଦିନ ମଧ୍ୟରେ କାହାର ଟଙ୍କା ଦେବାର ଅଛି କି ନା !"

"ଜଣକର କଥା, କାଲି ବୋଧହୁଏ ପାଞ୍ଚ ସାତ ଜାଗାରୁ ପ୍ରାୟ ତିନି ଚାରି ଲକ୍ଷ ଟଙ୍କା ବେଙ୍କ୍‌କୁ ଅସିବ ।"

"ବାସ୍, ଜଲ୍ଦି ଫଳେ ।"

"କମିଛି ?"

"ମୁଁ ଅଜି ଅପଣଙ୍କୁ ପଚିଶ ହଜାର ଟଙ୍କାର ନୋଟ ଦେବି। ସବୁ ସୁଦ୍ଧା ଜାଲି ନୋଟ । ସେଗୁଡ଼ିକ ଭଲ ଭଲ ଲୋକଙ୍କର ନୋଟ୍ ସହିତ ବଦଳ କରି ଅସଲ ନୋଟ୍ ଅଣି ମହାରାଜକୁମାରଙ୍କ ନାମରେ ଜମା କରି ରଖିଲେ ସବୁ ଗୋଳ ତୁଟିଯିବ ।"

"ହଁ, ତା ମୁଁ ଅକ୍ଳେଶରେ କରିଦେବି ଯେ—"

"ବାସ୍, ତା ହେଲେ କାଲିଠାରୁ କାମ ଅରମ୍ଭ କରାଯିବ । ଗୁପ୍ତ-ସାହେବ ତ ଏଠାରେ Secretary ହୋଇ ରହିଲେ। ଏଠିକାର କାମ ପାଇଁ ସବୁ ସେ ଦେଖିବେ—ମୁଁ ଯିବି ମିରାଟକୁ ।"

"ସେଠାକୁ ଯିବାର ଦରକାର ହେବ ନାହିଁ । ସେମାନେ ଅଳ୍ପ ଦିନ ମଧ୍ୟରେ କଲିକତା ଅସୁଛନ୍ତି ଯେ—।"

"ତେବେ ତ କାମ ପାଣି ପରି ତରଳ ହୋଇଗଲା । କିନ୍ତୁ ଟଙ୍କାର କଥା ସବୁବେଳେ ମନେ ରଖିଥିବେ । ଟଙ୍କା ନ ପାଇଲେ ଆପଣଙ୍କ ଲିଖିତ ଦଲିଲଟି ଏକାବେଳକେ ପୋଲିସ୍ କମିସନରଙ୍କ ହାତରେ ଯାଇ ପଡ଼ିବ ।"

"ଅପଣ ସେ କଥା କାହିଁକି କହୁଛନ୍ତି ? ମୁଁ ଯେତେବେଳେ ଷଡ଼ଯନ୍ତ୍ରର ଖଣ୍ଡ ବ୍ୟାଖ୍ୟା କରି ସେଥିରେ ମୋ ନାମ ଯୋଡ଼ି ଦେଇ

ଶପଥ କରି କେଖୁଛ, ମୁଁ କେବେ ଆପଣମାନଙ୍କ ବରୁଦ୍ଧାଚରଣ କର-ପାରେଁ ? କନ୍ତୁ ମୁଁ ମଧ କହ ରଖୁଛୁ, ଟଙ୍କା ଦେବା ମାତ୍ରକେ ସେ ଦଲୀଲଟି ଉଅପସ୍ ଦେବାକୁ ପଡ଼ବ ।"

"ସେହ ମହୂର୍ତ୍ତିରେ—ଏକ ହାତରେ ଟଙ୍କା ଧରବ, ଅନ୍ୟ ହାତରେ ଦଲୀଲ ଦେବ ।"

କଥା ଭ୍ରଷା ଗୃଲଛ—ମହାରାଜକୁମାର ଧୂର୍ଜ୍ଜଟିପ୍ରସାଦ ଆସି ଉପସ୍ଥିତ ହେବାରୁ ସମସ୍ତେ ଉଠି ବସିଲେ । ସମସ୍ତଙ୍କୁ ହସି ହସି ଆପ୍ୟାୟିତ କର ବସିବା ପାଇଁ ଅନୁରୋଧ କଲେ ସେ । Secretary ପରସ୍ପରଙ୍କୁ ପରଚତ କରାଇ ଦେଲେ । ଏ ମହାରାଜ କୁମାର ଧୂର୍ଜ୍ଜଟିପ୍ରସାଦ ଦାସ—ଆଉ ଏ ଶ୍ରୀମାନ୍ ଭୁବନାନନ୍ଦ ବାବୁ—ଅମୃ ରାୟ ବାହାଦୁର ଯୋଗୀନ୍ଦ୍ର ନାରାୟଣ ବାବୁଙ୍କ ଭ୍ରାତୁଷ୍ପୁତ୍ର—ତାଙ୍କ ଦହିଣ ହସ୍ତ, ବେଙ୍କର କେସିଅର୍ ।"

"ଓ" କହ ମହାରାଜକୁମାର ହାତ ବଢ଼ାଇ ଦେବାରୁ ଉଭୟେ କରମର୍ଦ୍ଦନ କଲେ । ଭୁବନାନନ୍ଦ ବାବୁ କହଲେ, "ଆପଣଙ୍କ ସୁବଧା ଅସୁବଧାର କଥା ବୁଝିବା ପାଇଁ ମୁଁ ପ୍ରେରତ ।"

"ରାୟ ବାହାଦୁରଙ୍କୁ ମୋର ଅଶେଷ ଧନ୍ୟବାଦ ଜଣାଇ ଦେବେ । ମୁଁ ଅଚରାଧ ଯାଇ ତାଙ୍କ ସଙ୍ଗରେ ଦେଖା କରବ । ଏ ସୁଦୂର ବଦେଶରେ ସେ ଜଣେ ମାତ୍ର ମୋର ପରଚତ—ଅବଶ୍ୟ ଏତେବେଳ ଯାଏ ପ୍ରତ୍ୟକ୍ଷ ପରଚୟ ଘଟି ନାହିଁ, ତେବେ ମୁଁ ତାଙ୍କର ବଷୟ ଅନେକ ଶୁଣିଛ—।"

"ଆପଣ ତାଙ୍କ ନକଟକୁ ଗଲେ ସେ ବଡ଼ ସୁଖୀ ହେବେ ।"

"ମୁଁ ମଧ ତାଙ୍କ ପର ସୁନାମଧନ୍ୟ ବ୍ୟକ୍ତିର ଦର୍ଶନ ପାଇ ଧନ୍ୟ ହେବ ।" Secretary ଆଖିଠାରରେ କଣ ଇସାରା କଲେ, ମହାରାଜ-କୁମାର କହଲେ, "ଏଇ ସନ୍ଧ୍ୟାଭ୍ରମଣ ପାଇଁ ବାହାରୁଥିଲ ।"

"ତେବେ ଆପଣଙ୍କୁ ଆଉ ଅଟକ କରବ ନାହିଁ, ପୁଣି ଦେଖା ହେବ ।"

"ନଶ୍ଚୟ, ଆପଣମାନଙ୍କ ଘରେ ରହୁଛି ଯେତେବେଳେ, ମୁଁ ତ ଆପଣମାନଙ୍କର ଏକାନ୍ତ ଆଶ୍ରିତ ।"

Secretary ଡାକବା ଘଣ୍ଟା ବଜାଇବା ମାତ୍ରକେ ଶସ୍ତ୍ରଧାରୀ-ରକ୍ଷୀ ଆସି ସଲାମ କଲା । Secretary ପଗ୍ଚରଲେ—"ଗାଡ଼ ?"

"ଥେଙ୍କ୍ସ ହଜୁର।"

ମହାରାଜକୁମାର ତଳକୁ ଓହ୍ଲାଇଲେ। ପଛେ ପଛେ ଶରୀର-ରକ୍ଷୀ। ଗାଡ଼ି ଷ୍ଟାର୍ଟ ହେବା ମାତ୍ରକେ Secretaryଙ୍କୁ ଅସ୍ତବ୍ୟସ୍ତ ହୋଇ ଧାଇଁବାର ଦେଖି ଶରୀର-ରକ୍ଷୀ ଗାଡ଼ି ଛାଡ଼ିବା ପାଇଁ ନିଷେଧ କଲା। Secretary ଆସି ଗାଡ଼ିରେ ବସିଲେ। ଗାଡ଼ି ଛାଡ଼ିବା ମାତ୍ରକେ ସେ ମହାରାଜକୁମାରଙ୍କ କାନେ କାନେ କହିଲେ, "ତମ ଦଶ ହଜାର ଟଙ୍କା ନିଅ।"

ହିମାଂଶୁ ଅବାକ୍ ହୋଇ ରହିଲା। ତଥା ଭଣରେ ବାପ, ଏକା ଥରକେ ଦଶ ହଜାର! ନାମ କଣ? ଯାହା ଥାଉ କପାଳରେ, ଏହି ଟଙ୍କା ସ୍ୱତାଭ ଡାକ Calcutta Imperial Bankକୁ ପଠାଇ ଦେବାକୁ ହେବ। ଖୁଣି ଛଡ଼ା ଅଜ ସବୁଥିରେ ଯୋଗ ଦେଇପାରିବ। ନ ହେଲେ ଯେ ମୋର ଲୁହ—ପ୍ରାଣର ଲୁହ, ଚିର ଦିନ ମୋହନ ଅନ୍ତର ଯୋଗୁ ପାଇଁ କେବଳ ଅନ୍ତରରେ ହିଁ ରହିଯିବ; ବିକାଶ ତାର ହେବ ନାହିଁ କେବେ।

—୯—

ସେଦିନ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପୂର୍ଣ୍ଣ ଗ୍ରନ୍ଥମାଳା ସଙ୍ଗରେ, ଅନ୍ୟାନ୍ୟ ସୁନାମଧନ୍ୟ କେତେକ କବି ଓ ଲେଖକଙ୍କ ଲିଖିତ ପ୍ରାୟ ଦେଢ଼ଶ ଦୁଇଶ ଖଣ୍ଡ ବହି, କାରୁକାର୍ଯ୍ୟ-କରା ବେନାରସି ସିଲ୍କର ଶାଢ଼ୀ ଓ ବ୍ଲାଉଜ, ମୋତିର ହାର, ଚୂଡ଼ି ଓ ଗୋଟିଏ ମିନାର କାମକରା ନାସଡ଼ିବା, କୁମାର ଧୂର୍ଜଟୀପ୍ରସାଦଙ୍କଠାରୁ ଉପହାର ପାଇ ରାୟ ବାହାଦୁର ଯୋଗୀନ୍ଦ୍ର ବାବୁ ବଡ଼ ଖୁସି ହୋଇ, କନ୍ୟା ପ୍ରମୀଳାକୁ ଡକାଇ କହିଲେ, "ମା ଦେଖୁଛୁ—ଅଜକାଳର ପିଲାଗୁଡ଼ାଙ୍କର ବୁଦ୍ଧି?"

ପ୍ରମୀଳା ହସି ହସି କହିଲା—"ଏସବୁଡ଼ାକ କାହୁଁ ଆଣିଲେ?"

"ଆଣିଲି, ନା ଆସିଲା। କହୁଛି ପରା ପିଲାଙ୍କ ବୁଦ୍ଧି। ସେହି ମହାରାଜକୁମାର ଧୂର୍ଜଟିପ୍ରସାଦର କଥା କହୁଥିଲି ନା? ସେ ଆସି ଆମ ବସନ୍ତ କୋଠିରେ ଅଛନ୍ତି। ସେ ଦେଇଛନ୍ତି ପରା।"

"ଆମେ ରଖିବା କିଆଁ ? ଆମେ କଣ ଏସବୁ ଦେଖି ନାହୁଁ ନା ଆମର ନାହିଁ ? ଏଗୁଡ଼ାକ ଫେରାଇଦେବା ଉଚିତ । ମୁଁ ଭୁବନ ଦାଦା ହାତରେ ଫେରସ୍ତ ପଠାଇ ଦେଉଛି । ଅଶିକ୍ଷା ଅଜଣା—ଯିଏ ଯେଉଁଆଡୁ ଆସି ଯାହା ଦେବ, ତାଙ୍କଠାରୁ ପର ଆମେ ହାତ ପାତି ନେବା କିଆଁ ?"

"ନ ନେଇ ଯେ ମା ଉପାୟ ନାହିଁ । ସେ ଯେଉଁ ଚିଠିଖଣ୍ଡିକ ଲେଖିଛନ୍ତି, ସେଥିରେ ଏଗୁଡ଼ା ଫେରସ୍ତ କଲେ କେବଳ ତାଙ୍କ ମନରେ ଦୁଃଖ ଦିଆ ହେବ ନାହିଁ, ଆମ ଅଭଦ୍ରତା ମଧ୍ୟ ପ୍ରକାଶ ପାଇବ ଯେ ! ପରିଚୟହୀନ, ବନ୍ଧୁବାନ୍ଧବଶୂନ୍ୟ ସୁଦୂର ବିଦେଶକୁ ଆସି ସେ ଯେ ସମ୍ପୂର୍ଣ୍ଣ ମୋହର ଉପରେ ନିର୍ଭର କରି ରହିଛନ୍ତି । ସେ ସ୍ନେହ-ଡୋର ଦେଇ ବାନ୍ଧିବାକୁ ବ୍ୟଗ୍ର; ଅଥଚ ମୋତେ ନିର୍ଦ୍ଦୟ ପଶୁ ପରି ସେ ବନ୍ଧନ ଛିନ୍ନଭିନ୍ନ କରିବାକୁ କହୁଛ ? ସେ ଚିଠିଖଣ୍ଡିକ ପଢି ଦେଖ, କି ସୁନ୍ଦର ଅନ୍ତଃକରଣ, କି ବିନୟୀ, ମହତ୍ । ଆଜି ଗୁରୁବାର ବେଳେ ଆମ ଏଠାକୁ ଆସିବେ ସେ—ଦେଖିବ, ତାଙ୍କର ଯେପରି ଯୋଗ୍ୟ ସମ୍ବର୍ଦ୍ଧନା ହୁଏ ।"

କାନ୍ତିବାବୁଙ୍କ ଅନାଇ ପ୍ରମୀଳା ଚଞ୍ଚଳ ହୋଇ କହିଲା, "କଣ କରିବ ? ଆଦୌ ଘଣ୍ଟାଟିଏ ସମୟ ଅଛି—ଏଥିମଧ୍ୟରେ ସମସ୍ତ ବନ୍ଦୋବସ୍ତ ହେବ କିପରି ? ଗୁରୁବାର ପୂର୍ବରୁ ତ ଭୁବନ ଦାଦା ଆସିବେ ନାହିଁ; ଏକା ମୁଁ କେଉଁଆଡେ ଦେଖିବି ? ଆପଣ ତାଙ୍କୁ ଡକାଇପଠାନ୍ତୁ ନା ।"

"ସେ ତ ମା ଏକ୍ଷଣି ଆସିପାରିବ ନାହିଁ; ଆଜି ତା ହାତରେ ବହୁତ କାମ ରହିଛି ।"

"କଣ ହେବ ତେବେ ?"

"ମୋର ପ୍ରମୀଳା ମା ଏକାଏକ ଶହେ ଯେ ।"

ଆତ୍ମପ୍ରଶଂସାରେ ଖୁସି ନ ହୁଏ, ଏପରି ଲୋକ ପୃଥିବୀରେ ଖୁବ କମ୍ । ହସିହସି ପ୍ରମୀଳା କହିଲା—"ଦେଖେଁ, ଯେତେଦୂର ସମ୍ଭବ ହୁଏ ।"

"ସମ୍ଭବ ଅସମ୍ଭବ ପରି କଥା ମା, ସମ୍ପୂର୍ଣ୍ଣରୂପେ ନ କଲେ ଯେ ତମର ଏହି ବୁଢ଼ା-ପିଲାଟିର ଦୁର୍ନାମ ହେବ ।"

ପ୍ରମୀଳା ଦାସଦାସୀ ନେଇ ଘରଦ୍ୱାର ଓଳାଅଳି କରାଇ ସବୁ ସଜାଇ କରି ରଖିବାକୁ ଲାଗିଲା । ଜଳଯୋଗର ବ୍ୟବସ୍ଥା ମଧ୍ୟ କରିବାକୁ ହେବ—

ରାଜାମହାରାଜା ଲୋକ, କେଉଁଥିରେ ଯେ କେତେବେଳେ ଅଭିମାନ କରି ଅପମାନ ମନେ କରନ୍ତି, ତାହା ସେମାନଙ୍କୁ ମଧ୍ୟ ଅଜଣା । ସେମାନଙ୍କ ଲୋଡ଼ା କଣ, କିମିତି ବ୍ୟବହାର ଗୃହାନ୍ତି, ସେମାନେ ଅଭ୍ୟନ୍ତରେ ମଧ୍ୟ କିଛି କହିବେ ନାହିଁ; ଅଥଚ ତାଙ୍କ ମନକଥା ଜାଣି କାମ ନ କଲେ ସର୍ବନାଶ । ପ୍ରମୀଳା ବ୍ୟସ୍ତ ହୋଇପଡ଼ିଲା—ଜୀବନରେ ସେ କୌଣସି ରାଜାମହାରାଜାର ସମ୍ମୁଖୀନ ହୋଇ ନାହିଁ । ତାର ଅନେକଟା ଭୟ କମିଗଲା, ଯେତେବେଳେ କୁମାର ସାହେବ ହସି ହସି ଆସି ତାର ପିତାଙ୍କର ଗୋଡ଼ ତଳରେ ମୁଣ୍ଡ ଲଗାଇ ପ୍ରଣାମ କଲେ । ରାୟ ବାହାଦୁର ଯୋଗୀନ୍ଦ୍ର ବାବୁ ବ୍ୟସ୍ତ ହୋଇ ହାଁ ହାଁ କରି ଉଠିଲେ । କୁମାର ଧୂର୍ଜଟିପ୍ରସାଦ ହସି ହସି କହିଲେ, "ଆପଣ-ମାନେ କଣ ଭାବନ୍ତି ଆମକୁ ସବୁ, ଆମେ ମଣିଷ ଛଡ଼ା ଆଉ କିଛି ନୋହୁଁ । ଅତି ସ୍ୱତଃସିଦ୍ଧ କଥା—ଆପଣ ବୟୋଜ୍ୟେଷ୍ଠ, ପିତୃତୁଲ୍ୟ, ଆପଣଙ୍କ ଗୋଡ଼ ଧୂଳି ମଥାରେ ନ ନେଲେ ଯେ ମହାଅପରାଧ ହେବ ମୋର ।"

କୁମାର ସାହେବଙ୍କ ସହାସ ସରଳ ବ୍ୟବହାରରେ ପ୍ରମୀଳା ମୁଗ୍ଧ ହୋଇଗଲା, ରାୟ ବାହାଦୁର ତ ଅବାକ୍ ! ଜଣେ ମହାରାଜକୁମାର ଯେ ଏତେଦୂର ଉନ୍ନତ, ଇମିତି ବିନୟୀ ହୋଇପାରନ୍ତି, ଏହା ତାଙ୍କ ଧାରଣା-ତୀତ ! ସେ ସସ୍ନେହରେ ତାଙ୍କୁ ବସାଇ କହିଲେ, "କୁମାର ସାହେବ—"

ବାଧା ଦେଇ ଧୂର୍ଜଟିପ୍ରସାଦ କହିଲେ, "କ୍ଷମା କରନ୍ତୁ, ଆଉ ଯିଏ ଯାହା ବୋଲି ଡାକୁ, ଆପଣ ଅନ୍ତତଃ ଏହି ଡାକଟା ଭୁଲିଯାନ୍ତୁ । ମୋର ନାମ ଧୂର୍ଜଟିପ୍ରସାଦ; ଆପଣ ନାମ ଧରି ନ ଡାକିଲେ ଯେ ମୋତେ ବହୁ ଦୂରରେ ଛଡ଼ା କରି ରଖାହୁଏ—ପାଖକୁ ଆସିବା ପଥ ଚିରକାଳ ବନ୍ଦ ଥାଏ ! ଆତ୍ମୀୟତାର ସ୍ନେହବନ୍ଧନ କଣ କଥାର କଥା ? ଏ ସବୁ ପୋଷାକୀ ଡାକରେ ମାଧୁର୍ଯ୍ୟ କଣ ଥାଏ ? ରେଙ୍ଗୁନ ଆସି ଆପଣଙ୍କ ଯେଉଁ ସୁନାମ ଶୁଣିଲି, ସେଥିରେ ଆପଣଙ୍କ ଦର୍ଶନ ନ କରି ରହିବା ମୋ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ବାସ୍ତବିକ ଆପଣଙ୍କ ଦର୍ଶନରେ ଗଙ୍ଗାସ୍ନାନର ଫଳ ମିଳେ । ଏଠାକୁ ଆସି ଆଜି ଅତୀତ ଦିନର ବହୁ ଆନନ୍ଦର ସ୍ମୃତି ମୋର ଜାଗ୍ରତ ହୋଇ ଫୁଟିଉଠୁଛି । ଏହାଙ୍କୁ ଦେଖି ମୋର ସ୍ୱର୍ଗଗତ ସ୍ନେହର ଭଉଣୀ ନିର୍ମାଲ୍ୟର କଥା ମନେ ପଡ଼ୁଛି । ଦୁହିଁଙ୍କର ଛବିରେ ବହୁ ନିକଟ-ତମ ସାମଞ୍ଜସ୍ୟ ରହିଛି କି ନା !"

ରାୟବାହାଦୁର ହସି ହସି କହିଲେ, "ଭାଇ,—ତାଙ୍କ କଥାର ଏହା ବଡ଼ କମ ମୂଲ୍ୟ ନୁହେଁ—— ।"

ଇଙ୍ଗିତରେ ପ୍ରମୀଳା ଆସି ପ୍ରଣାମ କଲା—ଧୂର୍ଜଟିପ୍ରସାଦ ମନେ ମନେ ଆଶୀର୍ବାଦ କରିବା ଛଳରେ ଦୁଇ ଏକ ମିନିଟ୍ ତୁନି ହୋଇ କହିଲେ, "ଦେଖନ୍ତୁ, ଆପଣ ମୋତେ କୁମାର କହିବେ ନାହିଁ—ଦାଦା ବୋଲି ଡାକିଲେ ବଡ଼ ସୁଖୀ ହେବି ।"

ପ୍ରମୀଳା ହସିଉଠି କହିଲା, "ଆପଣ ଯେ ଏଥିରେ ବାଦ ସାଧୁଛନ୍ତି ।"

"ମୁଁ ?"

"ନିଶ୍ଚୟ, ନ ହେଲେ ଆପଣ ଆପଣ କରୁଛନ୍ତି କାହିଁ ?"

ରାୟବାହାଦୁର ଠୋ ଠୋ କରି ହସିଉଠି କହିଲେ, "ଏ ପାଗଳୀ ମାଆଟି ମୋର ବଡ଼ ସହଜ ନୁହେଁ ଧୂର୍ଜଟିପ୍ରସାଦ ! ଇୟା ସଙ୍ଗରେ ପାରି ଉଠିବା ଦୁଷ୍କର । ମୋତେ ତ ସାନ ପିଲାଟି ପରି ଦିନରାତି ଆଖିରେ ଆଖିରେ ରଖିଛି—ସବୁବେଳେ ଡର୍ କାଳେ ବୁଢା ବାପାର ନାମଟି ତାର ଜୀବନ୍ତ ଲୋକର ତାଲିକାରୁ ବାଦ ପଡ଼ିଯାଏ ।

କୃତ୍ରିମ କ୍ରୋଧରେ ପ୍ରମୀଳା କହିଲା, "ଫେର ସେହି କଥା !"

"ନା, ମା—ନା, ଭୁଲି ଯାଉଥିଲି ପରା !"

"ଇମିତି ଭୁଲି କଲେ ଔଷଧର ମାତ୍ରା ବଢାଇ ଦେବି । ଦିନକୁ ୪ଥର, ମନେ ରଖିଥିବେ କିନ୍ତୁ !"

ଧୂର୍ଜଟିପ୍ରସାଦ ପଚାରିଲେ, "ଆପଣଙ୍କ ଅସୁସ୍ଥତା କଣ ?"

"କିଏ ଜାଣେ ବାବୁ ! ଡାକ୍ତର, କବିରାଜ କେହି ତ କିଛି ଧରିପାରୁ ନାହାନ୍ତି । ଦିନକୁ ଦିନ ଦୁର୍ବଳତା ବଢୁଛି, ଖାଇବାକୁ ଜମା ଇଚ୍ଛା ନାହିଁ—ଅବସାଦଭରା ମନ ନେଇ କିଛି କାମପତି କରିପାରୁ ନାହିଁ—ଏବେ ତ ଉଠିବାକୁ କଷ୍ଟ ହେଉଛି—।"

"ଡାକ୍ତରୀ ପରୀକ୍ଷା କରାଇଥିଲେ କେବେ ?"

"ନା ।"

"ଯଦି ଅନୁମତି ଦିଅନ୍ତି, ତେବେ କିଛି ଦିନ ପରେ ମୁଁ ଥରେ ତାଙ୍କୁ ଆଣି ଦେଖାନ୍ତି— ।"

"କିଏ ସେ ?"

"ମିସ୍ତରର ଜଣେ ଗବେଷକ—ଅଦ୍ଭୁତ ତାଙ୍କ ଗବେଷଣାପ୍ରଣାଳୀ । ଅନେକ ଦୁରାରୋଗ୍ୟ ରୋଗ ସେ ଭଲ କରିଛନ୍ତି । ଅଳ୍ପ ଦିନ ମଧ୍ୟରେ ମୋର ଏକ ଅନ୍ତରଙ୍ଗ ବନ୍ଧୁର ଅଭିଭାବକ ହୋଇ ଏଠାକୁ ଆସୁଛନ୍ତି ସେ ।"

"ବନ୍ଧୁର ଅଭିଭାବକ !"

"ହଁ, ମୋର ସେ ବନ୍ଧୁଟି ଯେଉଁ ଧରଣର ଲୋକ, ତାଙ୍କ ସଙ୍ଗରେ ଜଣେ ଗବେଷକ ନ ହୋଇ ମା ବାପଙ୍କ ଘରୁ ପାଦେ ବାହାରିବାକୁ ଦେବେ ନାହିଁ । ବାସ୍ତବିକ ଅମୂଲ୍ୟଟା ଗୋଟାଏ ବଡ଼ ଅଦ୍ଭୁତ ପ୍ରକୃତିର ଲୋକ ।"

"ଜମିଦାର ଅମଲ୍ୟ ରାୟ !"

"ଆପଣ ଚିହ୍ନିଛନ୍ତି ତାଙ୍କୁ ?"

"ଚିଠିପତ୍ରରେ ଆଳାପ ଅଛି । ସେ ଏଠାକୁ ଆସିବେ ବୋଲି ମୋତେ ମଧ୍ୟ ଲେଖିଥିଲେ । ଅଜକୁ ୪।୫ ଦିନ ହେଲା ତାଙ୍କ ଚିଠି ପାଇଛି ।"

"ତାଙ୍କ ସଙ୍ଗରେ କିପରି ପରିଚୟ ହେଲା ?"

"ତାଙ୍କ ସମ୍ବନ୍ଧ ପାଇଁ ଚିଠି ନେଇ ମୋ ପାଖକୁ ଜଣେ ଭଦ୍ରଲୋକ ଆସିଥିଲେ କି ନା ।"

"କାହାର ଚିଠି ? ତାର, ନା ତା ମାର ?"

"ତାଙ୍କ ମାର ।"

ପ୍ରମୀଳା ଆଡ଼କୁ ଅନାଇ ହସି ହସି କହିଲେ, "ଶୁଣ, ତେବେ ତ ମୋର ଅହଙ୍କାର ସମ୍ବନ୍ଧ ମୌଳିକ ନୁହେଁ, ଭଉଣୀ ।"

ପ୍ରମୀଳା ମୁଣ୍ଡ ପୋଛି ଛିଡ଼ା ହେଲା—ଲାଜରେ ମୁହଁ ତାର ବସେରାଇ ଗୋଲାପ ପରି ତକ ତକ ହୋଇଉଠିଲା । 'ଚା'ର ବନ୍ଦୋବସ୍ତ କରି ଆସେ' କହି ସେ ବାହାରିଗଲା । ରାୟ ବାହାଦୁର ପଚାରିଲେ—"ପିଲାଟି କିପରି ?"

"ଅତି ଭଦ୍ର. ଅତି ମହତ; କିନ୍ତୁ ପିଲାବୁଦ୍ଧି ଜମା ଯାଇ ନାହିଁ । ଆଜକୁ ପ୍ରାୟ ଏକବର୍ଷ କାଳ ତା ସଙ୍ଗରେ ଦେଖାସାକ୍ଷାତ ନାହିଁ । ସେ କେବଳ ମୋର ସହପାଠୀ ନୁହେଁ, ସେମାନଙ୍କ ସଙ୍ଗରେ ଅମର ଆତ୍ମୀୟତା

ରହୁଛି ବହୁକାଳରୁ । ମୋର ମା'ଙ୍କ ଦୂରସମ୍ପର୍କୀୟ ମାଉସୀ ଝିଅ ଭଉଣୀର ପୁଅ ସେ—"

"ତେବେ ତମେ ବାବୁ ବସନ୍ତ-କୁଟୀରେ ରହୁବ କାହିଁ ? ଘରଛୁଆ ଘରକୁ ଅସ୍ତୁ ଏଠି ରହିବାକୁ ଜମା ଅସୁବିଧା ହେବ ନାହିଁ ।"

"ମୋର ନିକଏ ନିର୍ଜନତାର ନିତାନ୍ତ ଦରକାର; ନ ହେଲେ ଲେଖା-ପଢ଼ାର ବଡ଼ ଅସୁବିଧା ହବ ।"

"ଲେଖାଲେଖି କର ନା କଣ ?"

"ଚେଷ୍ଟା କରେ ମାତ୍ର ।"

"ଏ ଖବର ପାଇଲେ ପ୍ରମୀଳା କିନ୍ତୁ ମୋତେ ଅଥୟ କରି ପକାଇବ । ସାହିତ୍ୟକ ଆଲୋଚନା ପାଇଲେ ସେ ଖାଇବା ପିଇବା ଭୁଲିଯାଏ ନା—।"

ଗୋଟିଏ ଛୋଟ ଟିପାଇ ଉପରେ ଆଖି ପଡ଼ିବାରୁ ଧୂର୍ଜଟିପ୍ରସାଦ ଉଠି ଯାଇ ଗଜଦନ୍ତନିର୍ମିତ ନ୍ୟାୟବଳଖଣ୍ଡ ଏଣେତେଣେ କରି କହିଲ,"ଚମତ୍କାର ବଳଗୁଡ଼ିକ ତ ।"

"ଖେଳ ଆସେ ?"

"ମୋତେ ଭାରି ଭଲ ଲାଗେ ।"

"ପ୍ରମୀଳା ପ୍ରସ୍ତୁତ ହୋଇ ଆସୁ ଆସୁ ବାଜିଏ ଅଧେ ହୋଇଯାଉ ନା; ମୁଁ ମଧ୍ୟ ଦିନଯାକ ଆଉ ସୁଯୋଗ ପାଇ ନାହିଁ ।"

"ଆପଣଙ୍କ ସଙ୍ଗରେ—?"

"ଆରେ ଦୋଷ ନାହିଁ ଏଥିରେ । ଏହା ତ କେବଳ ବୁଦ୍ଧିର ଯୁଦ୍ଧ ମାତ୍ର ।"

ରାୟ ବାହାଦୁରଙ୍କ ଆଗ୍ରହ ଦେଖି ଧୂର୍ଜଟିପ୍ରସାଦ ବସିପଡ଼ିଲେ । ଖେଳ ଚାଲିଛି—ଘୋଡ଼ାର କିସ୍ତିରେ ମନ୍ତ୍ରୀ ଯାଏ ନ ଯାଏ; ରାୟ ବାହାଦୁର ପିଠିରେ ଚାପୁଡ଼ା ମାରି କହିଲେ, "ଚମତ୍କାର, ଚମତ୍କାର ଖେଳ ଶିଖିଛ ! ଅବସର ପାଇଲେ କେଉଁ ଯାଦ ଥରେ ଇଆଡ଼େ—"

"ମୁଁ ନିତ୍ୟ ଆସିବି । ମୋର ବଡ଼ ପ୍ରିୟ ଖେଳ ଏହା ।"

ରାୟବାହାଦୁର ଛବି କସ୍ତିରେ ମାତି ହେଲେ । ପ୍ରମୀଳା କହିଲା, "ବାପ୍, ଖେଳ ପାଇଲେ ବାପାଙ୍କର ଆଉ କୌଣସି କଥା ମନେ ନ ଥାଏ ।"

"ବଡ଼ ପକ୍କା ଖେଳୁଅଡ଼ ପାଇଛୁ ମା—ଜାଣୁନା ? ତୋର ଦାଦାଟିର ସାହିତ୍ୟକ ଆଲୋଚନା ମଧ୍ୟ ଅଛି—ଲେଖାଲେଖି କରନ୍ତି ।"

ପ୍ରମୀଳା ଅଗ୍ରହାନ୍ୱିତା ହୋଇ ପଚାରିଲା, "ସତେ ନା ?"

ଧୂର୍ଜଟିପ୍ରସାଦ କହିଲା, "ନା, ନା, ସିମିତି କିଛି ନୁହେଁ—।"

"ଅତି ବିନୟ ଛାଡ଼ି ଦିଅନ୍ତୁ; ଆପଣଙ୍କ ଲେଖା ଭାଲି ନ ଦେଖା-ଇଲେ ମୁଁ ସହଜରେ ଛାଡ଼ିବି ନାହିଁ—।"

"ମୁଁ ତ ଏଠାକୁ ସଙ୍ଗରେ ନେଇ ଅସି ନାହିଁ । ସାମାନ୍ୟ ଖଣ୍ଡିଏ ଦୁଇ ଖଣ୍ଡ ପଦ୍ୟ ଅବା ମୋ ବାକ୍ସ ପେଟରୁ ଖୋଜାଖୋଜି କଲେ ମିଳପାରେ ।"

"ତାହା ହିଁ ଯଥେଷ୍ଟ; ଭାଲି ନ ଦେଲେ ଛାଡ଼ିବି ନାହିଁ କିନ୍ତୁ; ଚାଲନ୍ତୁ, ଗପ୍ପଟା ଅଣ୍ଡା ହୋଇଯିବ ଯେ—।"

ଗୋଟିଏ ଘଣ୍ଟାର ପରିଚୟରେ ଧୂର୍ଜଟିପ୍ରସାଦ ରାୟବାହାଦୁରଙ୍କ ପରିବାରଭୁକ୍ତ ହୋଇଉଠିଲା—ଓସ୍ତାଦ ପିଲା କ ନା !

—୧୦—

କୁମାର ଧୂର୍ଜଟିପ୍ରସାଦ ଛଅଟା ବାଜୁ ନ ବାଜୁଣୁ ଗାଡ଼ି ନେଇ ପାର୍କ ଷ୍ଟ୍ରିଟକୁ ବାହାରିପଡ଼ିଲେ ରାୟବାହାଦୁରଙ୍କ ସଙ୍ଗରେ ନ୍ୟାୟବଲ ଖେଳିବା ପାଇଁ । ଏହା କିନ୍ତୁ ମୁଖ୍ୟ ଉଦ୍ଦେଶ୍ୟ ନୁହେଁ—ଉଦ୍ଦେଶ୍ୟ ଆହୁରି ଅଧିକ ପରିଚିତ ଓ ବିଶ୍ୱାସଭାଜନ ହେବା । Secretary ବୁଢ଼ା ସାହେବ ଅସିମ ଚେୟାରରେ ଶୋଇ ଶୋଇ ଖବରକାଗଜ ପଢ଼ୁଥିଲେ । ଚାକର ଯାଇ ଭିଜିଟିଂ କାର୍ଡ଼ଟିଏ ଧରାଇଦେବା ମାତ୍ରକେ ସେ ଅସ୍ତବ୍ୟସ୍ତ ହୋଇ ତଳକୁ ଧାଇଁଲେ ଅଭ୍ୟର୍ଥନା କରିବା ପାଇଁ । ଆଗନ୍ତୁକ ଅବଶ୍ୟ ତାଙ୍କର ଅପରିଚିତ ନୁହନ୍ତି, ଏକ କ୍ଲାସର ବନ୍ଧୁ ଆୟାର ସାହେବ; ତଥାପି ରାଜକୁମାରଙ୍କର ଅଦ ଲୋକଙ୍କ ଆଗରେ ଅଦବ କାଇଦା ଠିକ୍ ରଖିବାକୁ ହେବ

ତ ? ଅପ୍ସାର ସାହେବ ଆସି ଗୋଟିଏ ଚେୟାର ଟାଣି ନେଇ ବସି ପଡ଼ିଲେ
ସୁବା ସାହେବ ପଚାରିଲେ, "ଫେରିଲେ କେତେବେଳେ ?"

"କାଲି ରାତି ଆଠଟା ବେଳେ ।"

"ସେ ଆଡ଼େ କାମ କେତେଦୂର ହେଲା ?"

"ଏକପ୍ରକାର ଯୋଗାଡ଼ ଯନ୍ତ୍ର କରି ଆସିଛି । ଅତୁଳ ବାବୁ ମହା-ଖୁସି— ।"

"ଅତୁଳ ବାବୁ ?"

"ଏହି ସେ ଦିନର କଥା ଏତେ ଚଞ୍ଚଳ ଭୁଲିଗଲ ?"

"ମୁଁ ତାକୁ କେବେ ଦେଖିଥିଲେ ତ ?"

"ଦେଖିଥାଇ ନ ପାର; କିନ୍ତୁ ମୋହିନୀ ବାବୁଙ୍କ ଅକାଳ କୁଷ୍ମାଣ୍ଡର ନାମ ଶୁଣିଥିବ ନିଶ୍ଚୟ ।"

"ଓଃ ! ସେଇ ଯେ ରାୟ ବାହାଦୁର ଘରୁ ମାଡ଼ ଖାଇ ଏ ଅଞ୍ଚଳ ଛାଡ଼ ପଳାଇଛି ?"

"ହଁ, ଆଜିକାଲି ଆଉ ସେ ଅତୁଳ—ଅତୁଳ ନାହିଁ; ଏବେ ସେ ଟଙ୍କାର ଜାହାଜ ଗୋଟାଏ । ଦଶ ଜଣରେ ଜଣେ ନା !"

"ଏତେ ଟଙ୍କା କେଉଁଆଡ଼ୁ ପାଇଲା ?"

"ଦେନେଇଥିଲେ ଭଗବାନ ଯେତେବେଳେ ଦିଅନ୍ତି, ଘରଛାତ ଫଟାଇ ବର୍ଷାଧାର ପରି ଝରି ଝରି ଢାଳିଦିଅନ୍ତି । ଘୋଡ଼ଦୌଡ଼ରେ ପ୍ରାୟ ପନ୍ଦର, କୋଡ଼ିଏ ଲକ୍ଷ ଟଙ୍କା ଜିଣିଛି ସେ । ସନ୍ଧାନ ପାଇ ତା ପାଖକୁ ଗଲି; ସେ ପୁଣି ମିଷ୍ଟର ବରପାର୍ଟିର ପ୍ରତିବେଶୀ ନା ! ପ୍ରମୀଳାର ଖବର ଦେବାରୁ ସେ ଆକାଶର ଚାନ୍ଦ ହାତରେ ପାଇଲା । ପ୍ରଥମେ ପ୍ରମୀଳାକୁ ପାଇବା ପାଇଁ ସେ କଣ କମ୍ ଚେଷ୍ଟା କରିଥିଲା ? କେବଳ ଦାରିଦ୍ର୍ୟଦୋଷରୁ ମାଡ଼ ଖାଇ ଏ ଅଞ୍ଚଳ ଛାଡ଼ ପଳାଇଛି ନା ! ଏତେଦିନ ପରେ ସେ ପ୍ରତିଶୋଧ ନେବାର ସୁଯୋଗ ପାଇ ସହଜରେ ଛାଡ଼ିବ କି ବୁଝ ? ତା ପରେ ଶୁଣିଲା, ପ୍ରମୀଳା ଆଜିଯାଏ ଅନୂଢ଼ା—ସେ ତତ୍‌କ୍ଷଣାତ୍ କୋଡ଼ିଏ ହଜାର ଟଙ୍କା ଦେବାକୁ ରାଜି ହୋଇପଡ଼ିଲା ।"

"ମୋଟେ, କୋଡ଼ିଏ ହଜାର ?"

"ତମେ ତ ବମ୍ ଲେଡ଼ୀ ନୁହଁ ? ଲେଉଣିଗ୍ରେମଣି ଦେଖୁଛ—ଲୋଭରେ ପାପ—ପାପରେ ମୃତ୍ୟୁ ଜାଣ ତ ? ଏକୁ କୋଡ଼ିଏ ହଜାର ଟଙ୍କା ଅଧିକନ୍ତୁ ପ୍ରାପ୍ୟ—ପ୍ରମୀଳାକୁ ଖୁନ କରି ଆମ୍ଭର ଲାଭ କଣ ? ବରଂ ସେ ଜୀବିତ ଥିଲେ ଦୁଇ ପଟରୁ ସମୟ ଅସମୟରେ ବେଶ୍ ଦୁଇ ପଇସା ରୋଜଗାର କରିହେବ । ଭୁବନ ତ ଚିରକାଳ ଆମ ହାତରେ ରହିବ ।"

"ଭୁବନ କିନ୍ତୁ ଏବାବେଲକୁ ଶେଷ ନ କଲେ ପାହୁଲାଟିଏ ଆଉ ଦେବାକୁ ମଙ୍ଗ ନାହିଁ ।"

"ଏଥି ମଧ୍ୟରେ ଅଜ ଟଙ୍କାର ତାଗିଦ କରିଥିଲ ନା କଣ ?"

"ନ ହେଲେ ଥାଟ ବଜାୟ ରଖନ୍ତି କମିତି ?"

"କେତେ ଟଙ୍କା ଦେଲେ ?"

"ମୋଟେ ୫ ହଜାର । ଅବୁଲ ଅଗ୍ରିମ କିଛି ଦେଲ ନାହିଁ ?"

"ମୋତେ କଣ ଜାଁବାଳକ ପାଇଲ ? ଖରଚ ପାଇଁ ୩ ହଜାର ଟଙ୍କା ଅଗ୍ରିମ ଆଣିଛୁ, ଅବଶ୍ୟ ଦଲିଲ ଲେଖି । ସେ ଦଲିଲ ଫେରସ୍ତ ନ ଆଣିଲେ ଆମ୍ଭର ନାହି ନାହିଁ । ଏ କଥା ସବୁବେଳେ ମନେ ରଖିଥିବ; ସୁତରାଂ ସଅଳ ସଅଳ କାମ ହାସଲ କରିବା ନିତାନ୍ତ ଦରକାର । ଭୁବନ ମଧ୍ୟ ବଡ଼ ବିରକ୍ତ କରୁଥିବ ନିଶ୍ଚୟ ।"

"ଓ,ସେ କଥା ଆଉ କହିବାକୁ ହେବ ? ନିତି ଅସି ମୋ ପ୍ରାଣ ଖାଉଛି ନା ସେ । ତାର ଡର ବେଶି—ମିଟରର ସେ ପିଲା କାଳେ ଅସି ପହଞ୍ଚେ !"

"ଅରେ ସେ ଆଉ ଜୀବନରେ ଏମାନଙ୍କ ସଂସ୍ରବକୁ ଅସିବ ନାହିଁ । ନିତାନ୍ତ ସାଧାରଣ, ଅଛ ସ୍କୁଲ—ତା ପାଖକୁ ବେନାମୀ ୫ଟି ଗଲ, ପ୍ରମୀଳା ଅନ୍ୟମୁଗ୍ଧା । ନିତି 'ଟକିବାଇସ୍କୋପ୍', ଥିଏଟର, ରବୀନ୍ଦ୍ରନାଥ ନେଇ ଯୁବକ ଯୁବତୀ ମସଗୁଲ୍ । ଅଜାଡ଼ି ଦେଖି ଆପଣଙ୍କୁ ସମ୍ବାଦ ଦେଲୁ, ଯାହା ଭଲ ବୁଝିଲ, କଲ । ସେ ପିଲା ତ ରାଗରେ ଲାଲ ହୋଇ ସଙ୍ଗେ ସଙ୍ଗେ ଯାଇ ଜଣେ ମାମୁଲି ଓକିଲ ଘରେ ଦକାନ୍ଦ ଜଲ । ଖାଲି ସେଥିରେ କଣ ସେ ନିବୃତ୍ତ ହେଲ ଭାବୁଛ ? ତା ପରେ ଯେଉଁ ଚିଠିଖଣ୍ଡିକ ଲେଖିଛି—ବଜ୍ରଲେପ ନା !"

"ଓ, ସେଥିପାଇଁ ଅମ କୁମାର ସାହେବର ଏତେ ଅଦର ?"

"ନ ହେବ କଥା ? ଅଉ ଗୋଟାଏକୁ ଯୋଗାଡ଼ କରିବା ତ ଦରକାର । କେତେଦୂର ଅଗ୍ରସର ହେଲ ?"

"ଓସ୍ତାଦ ପିଲ । ଇମିତ ଖେଳୁଛୁ, ଦେଖିଲେ ଅବାକ୍ ହୋଇଯିବେ । ଅଜିକାଲି କୁମାର ଦାଦା ଛଡ଼ା ତିଳେ କାମ ଚଳୁ ନାହିଁ । ସେ ଦିନ ଯିବାକୁ ଅଧଘଣ୍ଟାଏ ଡେରି ହେଉ ହେଉ ସାତ ତାଗିଦ—ଚଞ୍ଚଳ ଆସ ।"

"ସୁ-ଖବର ନିଶ୍ଚୟ ।"

"କିନ୍ତୁ ସେ ଯଦି ଶେଷକୁ—"

"ଫାଙ୍କି ଦେବା ଚେଷ୍ଟା କରେ ?"

"ଅବାକ୍ କଣ ? ମସଗୁଲ ହୋଇ ରହିଛୁ ନା ।"

"ତା ହେଲେ ସେ ନୋଟଗୁଡ଼ିକ, ସହଜ ସରଳ ପଥ ଧରି ଏକାବେଳକେ ଯେ ମାମୁଘରକୁ ନେଇଯିବେ । ରାୟ ବାହାଦୁରଙ୍କ ହାତ ଭରି ପାରିଛ ?"

"ଯଥେଷ୍ଟ, କିନ୍ତୁ ସେ ଯାଏ ତାଙ୍କ ଅମନ୍ତ୍ରଣରେ ନ୍ୟାୟବଳ ଖେଳିବାକୁ । ( ତମେ ଯାହା କହନା କାହିଁକି ) ସେ କିନ୍ତୁ ପ୍ରମୀଳା ସଙ୍ଗରେ ଯିପରି ମିଳାମିଶା ଯାଉଛି, ସେ ସେ ସହଜରେ ଟଙ୍କା ପାଇଁ ତାକୁ ଛାଡ଼ିବ, ମୋର ତ ଜମା ବିଶ୍ୱାସ ହେଉ ନାହିଁ ।"

"ସହଜରେ ନ ଛାଡୁ—ବାପା ବୋଲି ଛାଡିବାକୁ ହେବ ଯେ । କାହାରକୁ ଆଣିବାର ସୁବିଧା କରିପାରିଛ ?"

"ନା ।"

"ତେବେ ଆଜି କାଲି କଣ ? ଯେତେ ମିଶ, ଯାହା କରୁ, ପଦାକୁ ନ ଅଣିଲେ ଉପାୟ ନାହିଁ । ବୁଢ଼ା ରାୟ ବାହାଦୁର ତ କାହାରକୁ ବିଶ୍ୱାସ କରେ ନାହିଁ । ତେବେ ଧୂର୍ତ୍ତଟି ଖୁବ ଚାଲାକ ବୋଲି ଏତେ ସଅଳ ପାଖରେ ପହଞ୍ଚି ପାରିଛ । ଅଜ ତାକୁ କହିବ, ଚଞ୍ଚଳ ବାୟସ୍କୋପ ଦେଖିବାକୁ ନିମନ୍ତ୍ରଣ କରୁ । ଅବଶ୍ୟ ରାୟବାହାଦୁରଙ୍କୁ ମଧ୍ୟ ବାଦ ଦେବ ନାହିଁ ।"

"ବୁଢ଼ା କଣ ଯିବ ?"

"ଅରେ ଯାଉ ନ ଯାଉ, କହିବା ଥରେ । ବୁଢ଼ାଙ୍କର ଏକାବେଳକେ ଧରିବୁ ଯିବାର ସମୟ ହୋଇଅସିଲାଣି ନା—ଅଉ କେତେ ଦିନ ରହିବ ?"

ପକେଟବୁକ୍ ଝାଡ଼ି ସ୍ମିଥ ସାହେବ କହିଲେ, "ଅଛି, କମ ପକ୍ଷରେ ଆଉ ଗୃହମାସ, ଯଦି କିଛି କିଛି ଧଆପାଏ।"

"ମାତ୍ର ଚଳାଇବା ?"

"ଅକ୍ଲେଶରେ ବଢ଼ାଇ ଦେଇହେବ; କିନ୍ତୁ ମାତ୍ର ଯେତେ ଶୀଘ୍ର ଶୀଘ୍ର ବଢ଼ିବ—ଜେଲ କବାଟ ସେତେ ସଅଳ ଖୋଲା ହୋଇଯିବ ଯେ—।"

"ସେଇଆ ତ ଭାବନା। ଆରେ ବୁଢ଼ା କଣ କରିବ ?"

"ବୁଢ଼ା କିଛି ନ କରନ୍ତୁ—ଟିକଟିକିଦଳ ପଛରେ ଲାଗିବେ ଯେ— ସେଇଟା କଣ ବଡ଼ ସୁଖର କଥା ?"

"ନିଶ୍ଚୟ ନା; କିନ୍ତୁ ସେଗୁଡ଼ାକ କଣ କରିବେ ? ମୁଁ ସେମାନଙ୍କ ଆଖିରେ ଧୂଳି ଦେବାର ଯେଉଁ ବ୍ୟବସ୍ଥା କରି ଅସିଛି, ଶୁଣିଲେ ଅବାକ୍ ହୋଇଯିବ।"

"କଣ ?"

"ସବୁକଥା କହିବି ନାହିଁ—ତେବେ ଏତିକି ମାତ୍ର ଶୁଣି ରଖ, ଆମ କାଳ 'ହଣ୍ଡ୍ରେଡ୍‌ସନ' ଜାହାଜରେ କାମ ପାଇଛି। କାମ ବୋଲି କାମ, ଖଲାସୀମାନଙ୍କ ସର୍ବେସର୍ବା।"

"ଏଥିରେ ସାପର ପାଞ୍ଚଟା ଗୋଡ଼ ଦେଖିଲେ କିମିତି ?"

"ତମ ପରି ବୁଦ୍ଧିଟା ମୋର ସାଫ୍ ନୁହେଁ ବୋଲି—ଆରେ ଏଠାରୁ ଯିବାକୁ ପଡ଼ିବ ତ।"

"ଯିବାର ପୁଣି ଭାବନା ?"

"ଏକା ହେଲେ କିମା ନ ଥାନ୍ତା; କିନ୍ତୁ ପ୍ରମିଳା—"

"ସେ କଣ ସଙ୍ଗରେ ଯିବ ?"

"ଯିବ ନାହିଁ; କିନ୍ତୁ ନେବାକୁ ପଡ଼ିବ। ଅଛି ଭୁବନ ବାବୁ ଏଠାକୁ ଆସିବେ ?"

"ଆସିବା କଥା ଅଛି।"

"ମୋ ହାତରେ ଅନେକ କାମ—ସେ ଆସିଲେ କହିବ, ଅତଉଛ ହେବାର ଦରକାର ନାହିଁ—ସବୁ ଠିକ ହୋଇଯିବ। ମୁଁ ସବୁ ଯୋଗାଡ଼ ଯନ୍ତ୍ର କରି ରଖିଛି। ଯାଉଛି, 'ହଣ୍ଡ୍ରେଡ୍‌ସନ୍' ଜାହାଜରେ କେତେକ ବନ୍ଦୋ-

ବସ୍ତ୍ର କରି ରଖିବ । ଖୁବ ସମ୍ଭବ ଦୁଇ ଏକ ଦିନ ମଧ୍ୟରେ ଆମକୁ ଏଠିକାର କାମ ଶେଷ କରି ମୋଟଘୋଟ ବାନ୍ଧିବାକୁ ପଡ଼ିବ । ତୁମଆଡ଼େ ଲକ୍ଷ୍ୟ ରଖି କାମ କରିବାକୁ ହେବ । ମୁଁ କାଲି ରାତି ୧୦ଟା ପରେ ଆସିବି—ତମ କୁମାର ସାହେବଙ୍କୁ ବସାରେ ରହିବାକୁ କହିଥିବ ।”

—୧୧—

ସନ୍ଧ୍ୟା ୭ଟା—ଖାଇବାବେଳ ଗଡ଼ିଗଲଣି; ତଥାପି ରାୟ ବାହାଦୁରଙ୍କ ଭ୍ରୂକ୍ଷେପ ନାହିଁ—ଅଥଚ ସେ ନିଜେ ବଡ଼ ବେଶି ସମୟ ଧରି କାମ କରନ୍ତି । ଦୁଇ ଜଣ ଭଦ୍ର ଲୋକ ଦେଖା କରିବା ପରେ ସେ ବଡ଼ ବେଶି ଚଞ୍ଚଳ; ଘନ ଘନ ଦେଇଅଲ୍‌ରେ ଟଙ୍ଗା ଘଣ୍ଟାକୁ ଅନାଉଛନ୍ତି । ପ୍ରମୀଳା କୁମାର ଦାଦାକୁ ସଙ୍ଗରେ ନେଇ ‘ଟକି’ ଦେଖିବା ପାଇଁ ଯାଉଛି । ଯିବ ନାହିଁ କିଆଁ ? ଦୁଇ ତିନି ଦିନ ତାଙ୍କ ଆମନ୍ତ୍ରଣରେ ଯାଇ ‘ଟକି’ ଦେଖି ଆସିଛି ସେ—ଅବଶ୍ୟ ଭୁବନ ଦାଦା ସଙ୍ଗରେ ଥିଲେ; କିନ୍ତୁ ଆଜି କେବଳ ଭୁବନ ଦାଦା ଅସୁସ୍ଥ ବୋଲି କଣ ‘ଟକି’ ଦେଖିବାଟା ବନ୍ଦ ରହିଯିବ ? କୁମାର ଦାଦାର ଆମନ୍ତ୍ରଣ ଉପେକ୍ଷିତ ହେବ ?

ଘଣ୍ଟା ଦେଖି ଦେଖି ରାୟ ବାହାଦୁର ଅତ୍ୟନ୍ତ ବିରକ୍ତ ହୋଇଗଲେଣି; ତଥାପି ତାଙ୍କର ଠିକାରେ କଣା ତାଙ୍କର ଘଡ଼ିଟା ଏତେବେଳଯାଏ ୯ଟା ବଜାଉ ନାହିଁ । ଟିକ୍ ଟିକ୍ ଟିକ୍—ଚାଲିଛି ନିୟମିତ । ଟିକିଏ ସଅଳ ଚାଲି ନା, ସେ କଣ କଥା ଶୁଣିବ ନା ମାନିବ ? ୯ଟା ବାଜି ନ ଗଲେ ଯେ ଡିଟେକ୍‌ଟିଭ୍ ସୁନାମ ବାବୁ ଜମା ଏଠାକୁ ଆସିବେ ନାହିଁ । କଣ ଗୋଟାଏ ଜରୁରୀ କାମରେ ଭାରି ବ୍ୟସ୍ତ ଅଛନ୍ତି ସେ ।

ରାୟ ବାହାଦୁର ଠିକ୍ ପାଗଳ ପରି ଧାଇଁ ବୁଲୁଛନ୍ତି—ଉପର, ତଳ—ତଳ, ଉପର । ଦାସଦାସୀ ତ ଅବାକ୍; ସେ ତ କେବେଣା ଗଡ଼ ଉଠୁ ନ ଥିଲେ, ଆଜି ହଠାତ୍ ହେଲା କଣ ? ପଗ୍ଳବ କଏ ? ସମୟ ତାହାର ମୁହଁ ଚାହିଁ କାମ କରେ ନାହିଁ—ଚାଲିଛି ସେ ତାର ନିୟମିତ, ସ୍ୱଚ୍ଛନ୍ଦ ଗତିରେ । ତମର

ଦୁଃଖ ହେଉ କି ସୁଖ ହେଉ, ତାର କଣ ? ସାଢ଼େ ଆଠଟା ଫୋନ୍‌ରେ ଶବ୍ଦ ହେଲା ଟଣ୍ ଟଣ୍ ଟଣ୍ । ରାୟ ବାହାଦୁର ଧାଇଁଯାଇ ଫୋନ୍ ଧରିଲେ ।

ପ୍ରଶ୍ନ ହେଲା—"ଆପଣ ?"

"ଯୋଗୀନ୍ଦ୍ର—"

"ଓ, ରାୟ ବାହାଦୁର ! ମୁଁ ଗୋଟାଏ ଜରୁରି କାମରେ ବଡ଼ ବ୍ୟସ୍ତ ଥିଲି । ଅଭବା ସମୟ ପାଉଛି—ମୋର ଅନିଚ୍ଛାକୃତ ଅପରାଧ ପାଇଁ କ୍ଷମା କରିବେ ! ଯଦି ବିଶେଷ ଜରୁରି କାମ ଥାଏ, ମୁଁ ଏକ୍ଷଣି ଯିବି; କିନ୍ତୁ ଛଦ୍ମ-ବେଶରେ ନ ହେଲେ ଯିବ ଚଳିଯାରେ । ପୋଷାକ ପରିଚ୍ଛଦ ବଦଳାଇ ଘଣ୍ଟେ ଖଣ୍ଡେ ଭିତରେ ହାଜର ହେବି ।"

"ତୁରନ୍ତ ଆସ, ମୁଁ ବଡ଼ ବିପଦ୍‌ଗ୍ରସ୍ତ; ମୋର ମାନସମ୍ମାନ ସବୁ ଯିବାକୁ ବସିଛି, କେବଳ ତମେ ଭରସା ।"

"ମୁଁ ଯାଉଛି ଚଷାଟିଏ ପରି । ଦରୱାନ୍ ବାଟ ଛାଡ଼ିବ ତ ?"

"ସେ ବ୍ୟବସ୍ଥା ମୁଁ କରି ରଖୁଛି ।"

"ବେଶ୍, ମୁଁ ବାହାରୁଛି; କିନ୍ତୁ ମୋ ନାମ ଅପ୍ରକାଶ ରଖିବେ । ମୁଁ ଜଣେ ଚଷା ମାତ୍ର ।"

ରାୟ ବାହାଦୁର ତତ୍‌କ୍ଷଣାତ୍ ଦରୱାନ୍‌କୁ ଡାକି କହିଲେ, "ଜଣେ ଚଷା ମୋ ସଙ୍ଗରେ ଦେଖା କରିବାକୁ ଆସୁଛି । ସେ ଆସିଲେ, ମୋ ଶୋଇବା ଘରକୁ ଆଣି ଛାଡ଼ିବ, ବୁଝିଲ ? ଏଥିରେ ବିନ୍ଦୁମାତ୍ର ଅବହେଳା କଲେ ଚାକିରି ଯିବ ।"

ସଲାମ୍ କରି ଦରୱାନ୍ ପ୍ରସ୍ଥାନ କଲା । ରାୟ ବାହାଦୁର ଟେବୁଲରୁ ଦୁଇଖଣ୍ଡ ଚିଠି ନେଇ ପଢ଼ିବାକୁ ବସିଲେ । ଦୁଆରରେ ଘଣ୍ଟି ବାଜି ଉଠିଲା । ରାୟ ବାହାଦୁର ଦୁଆର ମୁହଁରେ ଯାଇ ଅପେକ୍ଷା କଲେ; ଆସିଲା କିଏ—ସୁଦାମ ନା ପ୍ରମୀଳା ? ଆସିଲେ କିନ୍ତୁ ଚଷାବେଶୀ ସୁଦାମ ବାବୁ—ଦେଶ ବିଖ୍ୟାତ ଡିଟେକ୍‌ଟିଭ୍ ।

ରାୟ ବାହାଦୁର ତାଙ୍କୁ ନେଇ ଭିତରକୁ ଯିବା ମାତ୍ରେ ସୁଦାମ ବାବୁ ପଚାରିଲେ, "ଖବର କଣ ?"

"କହୁଛି—ବିଶେଷ ଜରୁରି ନ ଥିଲେ ତମକୁ କଷ୍ଟ ଦିଅନ୍ତି ।"

"ମୋର ତ ଏହା ବ୍ୟବସାୟ, ଏଥିରେ କଷ୍ଟ କଣ ?"

"ଆଗ ଦ୍ୱାରଟା ବନ୍ଦ କରିଦେଇ ଆସେ", କହି ରାୟ ବାହାଦୁର ଉଠୁଁ ଉଠୁଁ ସୁଦାମ ବାବୁ ନିଜେ ଯାଇ ଦ୍ୱାର ବନ୍ଦ କରିଦେଲେ ।

ରାୟ ବାହାଦୁର କହିଲେ, "ସୁଦାମ, ତମେ ତ ମୋର ପର ନୁହଁ ?"

"ଆଜି ହଠାତ୍ ଏ କଥା କିଆଁ ? ଆପଣଙ୍କର ଆଦେଶ କଣ ?"

"ବାପା, ମୁଁ ବଡ଼ ବିପଦରେ ପଡ଼ିଛି; ମୋର ବେଙ୍କରୁ ପ୍ରାୟ ଏକ ଲକ୍ଷ ବାର ହଜାର ଟଙ୍କା ଚୋରି ହୋଇଯାଇଛି ।"

"ଚୋରି—? କେବେ—?"

"ଠିକ୍ ଚୋରି ନୁହେଁ—ତେବେ ମୁଁ ଚୋରି ହେବାକୁ ବସିଛି । ତମେ ବୋଧହୁଏ ଜାଣ ନାହିଁ; କିନ୍ତୁ ତମ ବାପାଙ୍କୁ ଭଲରୂପେ ଜଣାଥିଲା ଯେ, ମୋର ଭାଗ୍ୟ ପରିବର୍ତ୍ତନର ପ୍ରଧାନ କାରଣ—ବଟଲର ଓ କୁ, କମ୍ପାନି, ଆଜି ତମକୁ ଫୋନ୍ କରିବା ଆଗରୁ ସେହି ଦୁଇ କମ୍ପାନିର ମେନେଜର ଆସି ମୋଠାରେ ଜଣାଇଗଲେ—ସେମାନଙ୍କ ଜାଲ ନୋଟ୍ ଦିଆ-ହୋଇଅଛି ମୋ ବେଙ୍କରୁ । ହୁଏ ତ ଏଥିପାଇଁ ସେମାନେ ମୋତେ ଜେଲ ଦେଇପାରନ୍ତେ; କିନ୍ତୁ ମହତ୍ ସେମାନେ—କିଛି କରିବେ ନାହିଁ ବୋଲି ମୁଁ କଣ ସେମାନଙ୍କ ଲେଖାରେ ଚୋରି ହୋଇ ବସିଥିବି, ଅସହାୟ ପଙ୍ଗୁ ପରି ।"

"ନୋଟଗୁଡ଼ା କାହିଁ ?"

"ସେମାନଙ୍କଠାରେ ।"

"ଆପଣଙ୍କ ବେଙ୍କର ଟଙ୍କା ରଖେ କିଏ ?"

"ମୋହର ପୁତୁରା—ଭୁବନ ।"

"କେତେ ଦିନ ହେଲା ସେ କାମ କରୁଛନ୍ତି ?"

"ହେବ କିଛି ଦିନ ।"

"ସ୍ୱଭାବ, ଚରିତ୍ର ?"

"ମୋର ଭାଇ—ସହୋଦର ଭାଇର ପୁଅ ସେ । ଏହି ବଂଶର ରକ୍ତ ତାର ଶିରାରେ ଶିରାରେ ବହୁଛି ।"

"ତାଙ୍କଠାରେ ସମସ୍ତ ତହବିଲ ଥାଏ ?"

"ଥାଏ; କିନ୍ତୁ ଦୁଇଟି ଚାବି—ଗୋଟିଏ ମୋଠାରେ, ଗୋଟିଏ ତା ଠାରେ ରହେ। ଦୁହେଁ ଏକାଠି ନ ହେଲେ ଚାବି ଖୋଲିବା ସମ୍ପୂର୍ଣ୍ଣ ଅସମ୍ଭବ।"

"ଇତିମଧ୍ୟରେ ଆପଣଙ୍କ ଚାବି କେବେ ତାଙ୍କୁ ଦେଇଥିଲେ ?"

"ନା"

"ଭଲ କରି ମନେ କରନ୍ତୁ।"

"ଅଯଥା ସନ୍ଦେହ କରୁଛ ? ମୋଠାରୁ ମୁଁ ତାକୁ ବେଶି ବିଶ୍ବାସ କରେ। ବାସ୍ତବିକ ବିଶ୍ବାସର ପାତ୍ର ସେ—।"

"କିଛି ମନେ କରିବେ ନାହିଁ—ସନ୍ଦେହ ନ କଲେ ଆମ କାମ ଅଚଳ କି ନା! ସର୍ବପ୍ରଥମେ ଆମ ଦୃଷ୍ଟି ପଡ଼େ ନିକଟତମଙ୍କ ଉପରେ। ଆଚ୍ଛା, ଆପଣଙ୍କ ଚାବି ଅନ୍ୟ କାହାର ପାଇବାର ସମ୍ଭାବନା ଅଛି ?"

"ମୋ ଅଗୋଚରରେ କେହି ତା ଛୁଇଁପାରିବେ ନାହିଁ।"

"ଆପଣଙ୍କ କନ୍ୟା ?"

"ପ୍ରମୀଳା ବିଚରା ଏସବୁ ଝଞ୍ଜଟକୁ କେବେ ପଶିବାକୁ ଚାହେଁ ନାହିଁ। ଜାଣେ ନାହିଁ ସେ, କାହିଁ ଥାଏ ମୋର ଚାବି, କାହିଁ ଥାଏ ମୋର ଟଙ୍କାକଉଡ଼ି।"

"ଏହି ଟଙ୍କା ଗୋଳମାଳର କଥା ଆଉ କେହି ଜାଣନ୍ତି ?"

"ନା।"

"ଭୁବନ ବାବୁ କିମ୍ବା ଆପଣଙ୍କ କନ୍ୟା ?"

"ଭୁବନ ତ ଦଶଦିନ ହେଲା ଅସୁସ୍ଥ—ସେ କାମ କରିବାକୁ ମଧ୍ୟ ଯାଇ ନାହିଁ। ଶୋଇ ରହିଛି ଶୁଣିଲ। ସେ ସୁସ୍ଥ ଥିଲେ ମୋର ଏ ଦୁର୍ଦ୍ଦଶା ଘଟନ୍ତା ? ପ୍ରମୀଳା ମଧ୍ୟ······ସନ୍ଧ୍ୟା ୬ଟାରୁ ତାର କୁମାର ଦାଦାକୁ ନେଇ 'ଟକି' ଦେଖିବା ପାଇଁ ବାହାରି ଯାଇଛି।"

"କୁମାର ଦାଦା ?"

"କୁମାର ଧୂର୍ଜ୍ଜଟି ପ୍ରସାଦ—ବଡ଼ ଅମାୟିକ ପିଲା, ବୁଲିବା ପାଇଁ ଏ ଅଞ୍ଚଳକୁ ଆସିଛନ୍ତି।"

"ଆପଣଙ୍କ ସଙ୍ଗରେ କେତେ ଦିନର ପରିଚୟ ?"

"ଏହି ଅଳ୍ପ ଦିନ ହେଲା ସେ ଆସି ମୋର ବସନ୍ତ-କୁଟୀରରେ ରହୁଛନ୍ତି । ଏଥିରୁ ହିଁ ଆଳାପର ସୂତ୍ରପାତ ।"

"ଓଃ ! ଇତିମଧ୍ୟରେ ଆପଣଙ୍କ ବେଙ୍କରେ କାହାର୍ ନୋଟ ଜମା ରଖା ହୋଇଛି ?"

"ହଁ, ବଟଲର ଓ କୋଂ କମ୍ପାନୀର ପ୍ରାୟ ସାତ ଲକ୍ଷ ଟଙ୍କା ।"

"ଇତିମଧ୍ୟରେ କେହି ଟଙ୍କା ନେଇ ନାହାନ୍ତି ?"

"ନେଇଛନ୍ତି—Blick Bird & Co. ପ୍ରାୟ ଲକ୍ଷାଧିକ ଟଙ୍କା । ସେମାନେ ତା ଜମା ଦେଇଥିଲେ । ପାଞ୍ଚ ହଜାର ଟଙ୍କା ପୂର୍ବେ ନେଇ ଯାଇଛନ୍ତି, ଆଜ ବାକି ଟଙ୍କା ନେଇଗଲେ— ।"

"ବଟଲର ଓ କୋଂ କମ୍ପାନୀ ଇତିମଧ୍ୟରେ କିଛି ନେଇ ନାହାନ୍ତି ?"

"ସେମାନେ ଆଜ ଯେଉଁ ଅଢେଇ ଲକ୍ଷ ଟଙ୍କା ନେଲେ, ସେଥିରେ ହିଁ ତ ଏ ସର୍ବନାଶ ।"

"କାଗଜପତ୍ର କାହାଠାରେ ?"

"କ୍ଷଚନ ନିକଟେ ରଖେ ।"

"କାହାନ୍ତି ସେ ?"

"ଘରେ ଅଛି ।"

"ସେ ଏଠାକୁ ଆସିପାରିବେ ?"

"ନିଶ୍ଚୟ—ପାରିବ ।"

"ଡାକନ୍ତୁ; ମୁଁ କିନ୍ତୁ ଅନ୍ତରାଳରେ ଥିବି । ସେ ଆସିଲେ ତାଙ୍କଠାରୁ ଖାତାପତ୍ର ସବୁ ମାଗିନେବେ । ମୁଁ ଥରେ ଦେଖିବି—କେବେ କେତେ ଟଙ୍କା ଜମା ହେଲା, କେତେ ଖରଚ କରାଗଲା । ଏହା ସର୍ବପ୍ରଥମେ ନ ଜାଣିଲେ ଜମା ମୋ କାମ ଚଳିବ ନାହିଁ । ଆଜ ଏ କଥା ପାଇଁ ଆପଣ ଏତେ ଅଧୀର ହେଲେ ଚଳିବ ନାହିଁ । ଆପଣ ଚୁପ ହୋଇ ବସନ୍ତୁ— ଦେଖନ୍ତୁ କଣ ହେଉଛି ।"

"ମୋ ଭରସା ଏକମାତ୍ର ତମେ; ସହର ପୋଲିସ୍‌କୁ ମୁଁ ଡାକିଲେ ଗୋଟାଏ ଗଣ୍ଡଗୋଳ ହେବ ବୋଲି ତମକୁ ଡାକିଲି । ତମେ ତ ଘରର ପିଲା ।"

"ସେଥିରେ ଆପଣଙ୍କର କଣ ସନ୍ଦେହ ଅଛି ?"

"ପାଗଳ ! ଅଚ୍ଛା, ମୁଁ ଭୁବନକୁ ଡକାଉଛି । ତମେ ଏହି ପର୍ଦ୍ଦା ସେ ପାଖରେ ରହ" କହି ରାୟ ବାହାଦୁର ବାହାରକୁ ଯାଇ ଡାକିଲେ, "ଭଜୁଆ ! ଭୁବନ ବାବୁ !"

ସଙ୍ଗେ ସଙ୍ଗେ ଭଜୁଆ ଆସି ସଲାମ୍ କରି କହିଲା, "ମୋତେ କେହି ଉଠାଇବ ନାହିଁ କହି ସେ କବାଟ କିଳି ୫ଟା ବେଳୁଁ ଶୋଇପଡ଼ିଛନ୍ତି ।"

"ଅଚ୍ଛା ଯା, ମୁଁ ଡାକୁଛି କହିବୁ ।"

ଭଜୁଆ ଫେରି ଆସି ପୁଣି କହିଲା, "ହଜୁର, ଡାକି ଡାକି କବାଟ ପେଲି ପେଲି ହଇରାଣ ହୋଇଗଲି, ବାବୁ ସାହେବ କଥା ଶୁଣିଲେ ନାହିଁ; ବଡ଼ ଶୋଇପଡ଼ିଛନ୍ତି ।"

"ଅଚ୍ଛା ଯା," କହି ରାୟ ବାହାଦୁର ଭିତରକୁ ଆସିଲେ । ସୁଦାମ ବାବୁ ଶୁଣି କହିଲେ, "ଥାଉ; ପ୍ରୟୋଜନ ନାହିଁ । କାଲି ସକାଳେ ତାଙ୍କ ଠାରୁ ସବୁ ଖାତାପତ୍ର ମଗାଇ ରଖିଥିବେ; ମୁଁ ୧୦।୧୧ଟା ମଧ୍ୟରେ ଆସି ଦେଖା କରିବି । ଆପଣଙ୍କର ଭାବିବାର କିଛି ନାହିଁ—ଯେ ନେଇଛି, ଯିମିତି କରି ନେଇଛି, ମୁଁ ଠିକ ଧରିଦେବି । ଆପଣ କୌଣସି ଗୋଳମାଳ ନ କରି କେବଳ ଚୁପ ହୋଇ ବସି ରହନ୍ତୁ ।"

ସୁଦାମ ବାବୁ ବିଦାୟ ନେଇ ପ୍ରଥମେ ଭୁବନ ବାବୁଙ୍କ କୋଠରୀ ଦ୍ୱାରରେ ଧକ୍କା ଦେଲେ; କିନ୍ତୁ କୌଣସି ପ୍ରକାର ଜବାବ ନ ପାଇ ସଦର ରାସ୍ତାକୁ ବାହାରି ପଡ଼ି ଉତ୍ତର ତରଫର ଗଳି ବାଟେ ବଗିଚା ପଛପଟ ଦୁଆରରେ ଆସି ଧକ୍କା ମାତ୍ର ଦେଇଛନ୍ତି, ଦୁଆର ଖୋଲା । ସ୍ୱସ୍ତିର ନିଶ୍ୱାସ ଛାଡ଼ି ସେ ଭିତରକୁ ପଶିଗଲେ—ଉତ୍ତର ପଶ୍ଚିମ ପଟର ରାସ୍ତା ଧରି ଯାଇ ଯାଇ ଭୁବନ ବାବୁଙ୍କ କୋଠରୀରେ ପହଞ୍ଚି ଦେଖନ୍ତି—ଦ୍ୱାର ମୁକ୍ତ । ଏତେ ଚଞ୍ଚଳ ଯେ କାମ ହାସଲ ହେବ, ସୁଦାମ ବାବୁ କଥା ଭାବି ନ ଥିଲେ । ଦ୍ୱାର ଖୋଲା ପାଇ ତତ୍‌କ୍ଷଣାତ୍ କୋଠରୀ ଭିତରକୁ ପଶି ଦ୍ୱାର ବନ୍ଦ କଲେ । ଅଣ୍ଟାରୁ ଗୁଚ୍ଛ ଗୋଛାଏ ଚାବି ଏକ, ଦୁଇ, ତିନି କରି ଭୁବନ ବାବୁଙ୍କ ଶଟ୍—ଯାକ ଟ୍ରଙ୍କ କ୍ରମେ କ୍ରମେ ଖୋଲି ଦେଖିଲେ, ସନ୍ଦେହଜନକ କାହିଁ କିଛି ନାହିଁ । ଶେଷ ଥର ଦେଉଆଲର ଆଲମାରି ଖୋଲି ଏକେ ଏକେ ସମସ୍ତ ଜିନିଷ ପରୀକ୍ଷା କରିବାକୁ ଆରମ୍ଭ କଲେ; କିନ୍ତୁ ବ୍ୟର୍ଥ । ସନ୍ଦେହଜନକ

ସେଥିରୁ ମଧ୍ୟ ମିଳିଲା ନାହିଁ । ଖୋଜି ଖୋଜି ଶେଷରେ ଗୋଟିଏ ଛୋଟିଆ ବାକ୍ସ ଭିତରେ ମିଳିଲା କେବଳ ସାପଡ଼ିମ୍ବ ଭଳିଆ ସବୁଜ ରଙ୍ଗର କେତେଗୁଡ଼ିଏ ବଟିକା । ସେଥି ମଧ୍ୟରୁ ୫।୭ଟି ନେଇ ଆସିଥିବା ବାଟରେ ନିର୍ବିଘ୍ନରେ ବାହାର ଗୁଳିଗଲେ ସେ ।

—୧୨—

ବିପଦ କେବେ ଏକୁଟିଆ ଆସେ ନାହିଁ । ଆସେ ସେ ସାଙ୍ଗୋପାଙ୍ଗ ସଙ୍ଗରେ ନେଇ ସଦଳବଳରେ ଜଳାଇ ପୋଡ଼ାଇ ମାରିବା ପାଇଁ । ସୁଦାମ ବାବୁ ଅଶ୍ୱାସନା ଦେଇଗଲେ ମଧ୍ୟ ରାୟ ବାହାଦୁର ଟିକେ ମାତ୍ର ସାନ୍ତ୍ୱନା ପାଇଲେ ନାହିଁ । କ୍ଷଣକୁ କ୍ଷଣ କେବଳ ତାଙ୍କର ମନେ ହେଉଥିଲା, ସେ ଚୋର, ଦସ୍ୟୁ, ପ୍ରବଞ୍ଚକ; ତାଙ୍କର ଅବହେଳାରେ ହିଁ ଏ ବିପଦ । ଯେଉଁ ବଡ଼ଲୋକର ଓ ଜମିଦାରର ଅନୁଗ୍ରହରେ ଦୀନଦୁଃଖୀର ସନ୍ତାନ— ଆଜି ସେ ରାୟ ବାହାଦୁର, ସେମାନଙ୍କଠାରେ ପ୍ରବଞ୍ଚନା ! ଅତି ମହତ୍ ସେମାନେ । ନ ହେଲେ ଏତେବେଳ ଯାଏ ହାତକଡ଼ା ଯୋଡ଼ିକ ହାତରେ ଆସି ପଡ଼ିଯାନ୍ତାଣି ।

କମିଶ କର ଜାଲ ନୋଟ୍ ଆସିଲା ? ଜୀବନକୁ ତ ଅବିଶ୍ୱାସ କରିବାକୁ ମନ କଲୁ ନାହିଁ ।

ପିଉପ୍ରାଣ ସେ ବିଗ୍ରହ ! ତାହାର କୁ-ଚକ୍ରରେ ଏ ବିପଦ ?

ସ୍ଥିର ସ୍ଥିର କିଛି ସ୍ଥିର କରିପାରୁ ନାହାନ୍ତି ସେ । ଘଡ଼ିରେ ଆଖି ପଡ଼ିବା ମାତ୍ରକେ ଚମକି ଉଠିଲେ, ସାଢ଼େ ବାରଟା—! ସର୍ବନାଶ, ପ୍ରମୀଳା କାହିଁ ? ସେ ଯେ କୁମାର ଦାଦା ସଙ୍ଗରେ ଛବି ଦେଖିବ ବୋଲି ପାଞ୍ଚଟା ବେଳେ ବାହାରି ଯାଇଛି । ପ୍ରଥମ ପ୍ରଦର୍ଶନୀ ତ ୯ଟା ବେଳେ ଶେଷ ହେବା କଥା; ତେବେ ଏତେ ଡେରି କାହିଁ ? ୨ୟ ପ୍ରଦର୍ଶନୀ ଦେଖିଥିଲେ ମଧ୍ୟ ଏତେ-ବେଳକୁ ଆସି ଘରେ ପହଞ୍ଚିବା ଉଚିତ ଥିଲା । ରାୟ ବାହାଦୁର ଛଟପଟ ହୋଇ ଉଠିଲେ—ପ୍ରମୀଳାର ହେଲା କଣ ? ସେ ତ ଜୀବନରେ କେବେ ଏତେ ରାତି ଯାଏ ଏକୁଟିଆ ରହେ ନାହିଁ । ସଙ୍ଗରେ ଅବଶ୍ୟ କୁମାର

ଧୂର୍ଜ୍ଜଟିପ୍ରସାଦ ଅଚଳନ୍ତି; କିନ୍ତୁ ଥିଲେ ମଧ୍ୟ ? ନିଜକୁ ବେତ ମାରିବାକୁ ଇଚ୍ଛା ହେଉଥିଲା ତାଙ୍କର । କାହିଁକି ସେ କୁମାର ସଙ୍ଗରେ ଯିବାକୁ ଅନୁମତି ଦେଲେ ? କିଏ ଏ କୁମାର, କାହୁଁ ଆସିଛି ଏ ? ଏହା କଥା ସତ ମିଛ ନ ଜାଣି ଏକାବେଳକେ ଏତେ ବିଶ୍ୱାସ କରିବାଟା ସମୀଚୀନ ହୋଇଛି କି ? ନା, ନା, ବିନମ୍ର, ନମ୍ର, ଶିକ୍ଷିତ ଯୁବକ, ଦସ୍ୟୁ କଣ ? ହୁଏ ତ ଦସ୍ୟୁ ପ୍ରଦର୍ଶନୀ ଦେଖି ଫେରିବାକୁ ଡେରି ହେଉଥିବ । କିନ୍ତୁ ଡେରି ହେବ କାହିଁ ? ନିଜ ଗାଡ଼ି ନେଇ ଯାଇଛି ସେ । କୁମାର ସାହେବ ପାଖକୁ ଲୋକ ଗଲା, ସେ ମଧ୍ୟ ଫେରି ନାହିଁ—ଏକ୍‌ସିଡେଣ୍ଟ ହେଲା କି ଅଜ—?

ବସନ୍ତ ବାହାଦୁର ଅଧୀର ହୋଇ ଡାକିଲେ—

"ଭିକୁଆ !"

"ହଜୁର !"

"ସୁମଣଙ୍କର ?"

"ସେ ତ ଆପଣଙ୍କ ସନ୍ଧାନରେ ଯାଇଛି ।"

"ଯାଇଛି ? ଅଚ୍ଛା, ଡ୍ରାଇଭରକୁ ମଧ୍ୟ ପଠାଅ ।"

"ସେ ମଧ୍ୟ ଯାଇଛି—"

"ଯାଇଛି, ଯାଇଛି—ଯାଇଛି ତ ଏତେବେଳ ଯାଏ କରୁଛି କଣ ? ଗାଡ଼ି ନେଇଯାଅ ।"

"ହଜୁର ।"

ପ୍ରମୀଳା କଲେ କଣ ? ଆଜି ଅସ୍ତ, କେବଳ ସ୍ନେହ ପାଇ ପାଇ ବୁଝିଛି ସେ ମୁଁ କେବଳ ସ୍ନେହ ହିଁ କରିଜାଣେ, ଦଣ୍ଡ ଦେଇ ପାରେ ନା—ମୋର ଶକ୍ତି ନାହିଁ, ମୁଁ ବୃଦ୍ଧ, ରୁଗ୍ଣ । ଆଜି ଫେରୁ, ଥରେ ଭଲ କରି ବୁଝାଇ ଦେବି । ଏତେବେଳ ଯାଏ ମୋ ଶକ୍ତିସାମର୍ଥ୍ୟର ଅଭାବ ଘଟି ନାହିଁ, ଏତେବେଳ ଯାଏ ତାକୁ ଦଣ୍ଡ ଦେବାର ଶକ୍ତି ଯଥେଷ୍ଟ ଅଛି ।"

ଭିକୁଆ ଆସି ଦୁଆରରେ ଛିଡ଼ା ହେଲା । ବସନ୍ତ ବାହାଦୁର ତା ଆଡ଼େ ଅନାଇବା ମାତ୍ରକେ କହିଲା, "ହଜୁର, କୁମାର ସାହେବ କି ଆପଣଙ୍କ କେହି ଫେରି ନାହାନ୍ତି ।"

"କଣ ?"

"ବସାକୁ ଫେରି ନାହାନ୍ତି ।

"ସୁମଣଙ୍କର ଫେରିଛି ?"

"ହଜୁର ।"

"ବୋଲାଓ ଜଲଦି ।"

ପର୍ଦ୍ଦାର ଅନ୍ତରାଳରୁ ସୁମଣଙ୍କର ଅସି ସଲାମ କରି ଛିଡ଼ା ହେଲା । ରାୟ ବାହାଦୁର ପଚାରିଲେ, "ତମେ କୁମାର ସାହେବଙ୍କ ବସାକୁ ଯାଇଥିଲ ?"

"ହଜୁର ।"

"କେତେବେଳେ ସେମାନେ ବାହାରିଛନ୍ତି ?"

"ଦରଜଆନ କହିଲା, ସାଢ଼େ ପାଞ୍ଚଟା ବେଳେ ।"

"ତାଙ୍କ Secretary ବସାରେ ଅଛନ୍ତି ?"

"ଜି—ନା ହଜୁର ।"

"ସଙ୍ଗରେ ଯାଇଛନ୍ତି ସେ ?"

"ଜି—ନା ହଜୁର ।"

"ଜି—ନା, ଜି—ନା !! କାହିଁ ଗଲେ ସେ ?"

ଦରଜଆନ୍ କହିଲା, "ପ୍ରାୟ ୮ଟା ବେଳୁ ସେ ବାହାରିଛନ୍ତି; ଏତେବେଳ ଯାଏ ଫେରି ନାହାନ୍ତି ।"

"କାହିଁ ଯାଇଛନ୍ତି—କିଛି ଜାଣେ ସେ ?"

"ନା ।"

"ଆମ ଗାଡ଼ିଟା ?"

"ଆପାଙ୍କ ସଙ୍ଗରେ ।"

"ଯାଅ ଆଉ ଦୁଇଟା ଗାଡ଼ି ନେଇ, ଚୁରିଆଡ଼େ ଖୋଜାଖୋଜି କର । ଅନ୍ତତଃ ଗାଡ଼ିଟା ତ ପାଇବ ।"

"ହଜୁର ।"

ସୁମଣଙ୍କର ବିଦାୟ ନେବା ମାତ୍ରକେ ରାୟ ବାହାଦୁର ଫୋନ ଧରି ଡାକିଲେ—

"ସୁଦାମ ବାବୁ !! ସୁଦାମ ବାବୁ !!"

ପ୍ରଶ୍ନ ରୂପେ ଉତ୍ତର ଅସିଲା, "କିଏ ?"

"ମୁଁ ଯୋଗୀନ୍ଦ୍ର।"
"ରାୟ ବାହାଦୁର ?"
"ହଁ ; ଆପଣ ?"
"ଶମ୍ଭୁନାଥ।"
"ସୁଦାମ ବାବୁଙ୍କ ସହକାରୀ ନା ?"
"ଆଜ୍ଞା ହଁ।"
"ସୁଦାମ ବାବୁ କାହାନ୍ତି ?"
"ଏଇ ମାତ୍ର ଶୋଇବାକୁ ଗଲେ।"
"ତାଙ୍କୁ ଥରେ ଡାକନ୍ତୁ ବିଶେଷ ଦରକାର।"

ରାତି ୧୨ଟା ବାଜିଲା। ରାୟ ବାହାଦୁର ଅତ୍ୟନ୍ତ ଅଧିକ ଅଧୀର ହୋଇପଡ଼ିଲେ। ପ୍ରମୀଳା କଣ ଅବିବେକୀ ? ନା ନା, ସେ ବଞ୍ଚିଥିଲେ କେବେ ଏତେ ଡେରିଯାଏ ମୋ ବିନାନୁମତିରେ ବାହାରେ ରହନ୍ତା ନାହିଁ। ସେ ଯେ କେବଳ ବାପ ବୋଲି ମୋତେ ଜାଣେ ନାହିଁ; ମୁଁ ଯେ ତାର ପିତା, ମାତା, ଭ୍ରାତା ଭଗିନୀ—ବନ୍ଧୁ ସଖା, ଏକାଧାରରେ ସବୁ। ସେ କଣ ମୋର ସ୍ନେହର ଅମର୍ଯ୍ୟାଦା କରି ଅନ୍ୟ କିଛି କରିପାରେ—ଯହିଁରେ ଲୋକଚକ୍ଷୁରେ ମୋ ମୁଣ୍ଡ ନଇଁ ପଡ଼ିବ ?

ଫୋନ୍‌ରେ ଶବ୍ଦ ହେଲା ଟଣ୍, ଟଣ୍, ଟଣ୍। ରାୟ ବାହାଦୁର କାନରେ ଧରି କହିଲେ, "Hallow."
"ରାୟ ବାହାଦୁର ?"
"ହଁ, ସୁଦାମ ବାବୁ।"
"ଆଜ୍ଞା, ବ୍ୟାପାର କଣ ?"
"ଚଞ୍ଚଳ ଆସ, ମୋର ସର୍ବନାଶ ହେବାକୁ ବସିଛି—ପ୍ରମୀଳା ମିଳୁ ନାହିଁ।"
"ପ୍ରମୀଳା ?"
"ହଁ, କୁମାର ସାହେବଙ୍କ ବସାକୁ ମଧ୍ୟ ଲୋକ ପଠାଇଥିଲି; ସେ ସୁଦ୍ଧା ଫେରି ନାହାନ୍ତି। ମୁଁ କହିଥିଲି, ଟିକେ ଦେଖିବା ପାଇଁ ସେମାନେ ଯାଇଛନ୍ତି; କିନ୍ତୁ ଗୋଟାଏ ବାଜିବାକୁ ବସିଲାଣି, କେହି ଫେରୁ ନାହାନ୍ତି।

ବ୍ୟାପାର କଣ, ବୁଝି ହେଉ ନାହିଁ । ସମ୍ଭବତଃ ମୋ ବିରୁଦ୍ଧରେ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର ଗୁହାଛନ୍ତି—ଧନରେ, ମାନରେ ମାରିବେ ମୋତେ । ପ୍ରାଣରେ ମାରିଥିଲେ ମୁଁ ବାସ୍ତବିକ ବ୍ୟାକୁଳ ହୁଅନ୍ତି ନାହିଁ । ତମେ ଶୀଘ୍ର ଆସ—ତମେ ହିଁ ମୋର ଏକମାତ୍ର ଭରସା । ପୋଲିସ ହାତରେ ଏ ବ୍ୟାପାର ଦେବାକୁ ମୋ ମନ ବଳୁ ନାହିଁ । ଚଞ୍ଚଳ ଆସ, ମୁଁ ନିଜେ ତମ ସଙ୍ଗରେ ଯୋଗ ଦେବି । ଯେତେ ଖର୍ଚ୍ଚ ହେଉ, ଯାହା ହେଉ—ଯିମିତି ହେଉ, ପ୍ରମୀଳାକୁ ଉଦ୍ଧାର ନ କଲେ ମୁଁ ବଞ୍ଚିବି ନାହିଁ । ଏ କଥା ତମକୁ କହିବା ବାହୁଲ୍ୟ ଜାଣି ମଧ୍ୟ ଜଣାଇ ଦେଲି—ଚଞ୍ଚଳ ଆସ ।"

"ବିପଦରେ ଏତେ ବ୍ୟସ୍ତ ହେଲେ ଚଳିବ ? ମୁଁ ମୋର ସହକାରୀକୁ ନେଇ ଯାଉଛି ଛଦ୍ମବେଶରେ । ଯଦି ଅସୁବିଧା ନ ହୁଏ, ସଦର ଫାଟକରେ ଏକୁଟିଆ ଆମ ସଙ୍ଗରେ ଦେଖା କରିବେ । ଆପଣଙ୍କ ଘରକୁ ପଶିବାର ବିଶେଷ କିଛି ଦରକାର ନାହିଁ । ଆପଣଙ୍କୁ ଦୁଇ ଏକ କଥା ପଚାରି ଆମେ ନିଜ କାମରେ ହାତ ଦେବୁଁ । ଭୁବନ ବାବୁ ଉଠିଛନ୍ତି ?"

"କିଛିକ୍ଷଣ ପୂର୍ବରୁ ସେ ଯନ୍ତ୍ରଣାରେ ବଡ଼ କାତର ହୋଇପଡ଼ିବାରୁ ତା ଚାକର ଆସି ମୋତେ ଖବର ଦେଇଦେଲା । ଡାକ୍ତର ଦେଖି ଔଷଧ ଦେଲେ । ଏବେ ସେ ଚୁପଚାପ୍ ଶୋଇ ରହିଛି; ତାକୁ ଉଠାଇ ବ୍ୟସ୍ତ କରି-ବାକୁ ମନ ଗଲା ନାହିଁ । ବଡ଼ କଷ୍ଟ ପାଉଛି ସେ ।"

"ଆଚ୍ଛା, ଆମେ ଯାଉଛୁଁ—ମାତ୍ର ସଦର ଗେଟ୍‌ରେ ଆସି ଦେଖା କରି ପାରିବେ କି ?"

"ନିଶ୍ଚୟ, ଆଜି ନିଜେ ନିଜକୁ ଦେଖି ପାରୁ ନାହିଁ—ପ୍ରମୀଳାକୁ ଫେରାଇ ପାଇବା ପାଇଁ ଅସାଧ୍ୟ ସାଧନ କରିବାକୁ ମୁଁ ପ୍ରସ୍ତୁତ; ତୁଚ୍ଛ ଶରୀର କଣ କରିବ ମୋର ?"

"ପ୍ରସ୍ତୁତ ଥାନ୍ତୁ—ସଙ୍ଗରେ କାହାରିକୁ ରଖିବେ ନାହିଁ ।"

—୧୩—

ପ୍ରସ୍ତାବମତେ ରାୟବାହାଦୁରଙ୍କ ସାଙ୍ଗରେ କଥାଭାଷା କରି ଯାହା କିଛି ଜାଣିବା ପ୍ରୟୋଜନ ଥିଲା, ଜାଣି ନେଇ ସହକାରୀ ଶମ୍ଭୁନାଥ ସହି

ଛଦ୍ମବେଶୀ ସୁଦାମ ବାବୁ ଧାଇଁଲେ କୁମାର ଧୂର୍ଜଟିପ୍ରସାଦଙ୍କ ବସାକୁ । ଦେଖାଯାଉ, ଯଦି ଏତେବେଳ ଯାଏ ସେ ଫେରିଥାନ୍ତି—କାର୍ଯ୍ୟର ଗୁରୁତ୍ୱ ଅନେକ ପରିମାଣରେ କମିଯିବ । ଫାଟକ ଯେ ବନ୍ଦ ରହିଛି—ତେବେ କଣ ସେ ଫେରିଲେଣି ? ଫେରିଥିଲେ ପ୍ରମୀଳା ଯାଆନ୍ତା କାହିଁ ? ଘରକୁ ଫେରିବାର ସହଜ ସରଳ ନିକଟ ପଥ ଦେଇ ସେ ନିଜେ ଏଠାକୁ ଆସିଛନ୍ତି । ବିଶେଷ ଭାବରେ ଲକ୍ଷ୍ୟ କରି ଦେଖିଛନ୍ତି, କେହି ସେ ବାଟେ ଗାଡ଼ିରେ ଯାଇଛନ୍ତି କି ନାହିଁ । ତେବେ ଫାଟକ ବନ୍ଦ କିଆଁ ? ମାଲିକ ତ ବାହାରରେ ଥିବାଯାଏ ଫାଟକ ବନ୍ଦ ରଖିବା କଥା ନୁହେଁ ! କିନ୍ତୁ ଯଦି ସେ ସାରାରାତ ବାହାରେ କଟାଇବାକୁ ଅଭ୍ୟସ୍ତ ଥାନ୍ତି, ତେବେ ସେ ଅଲଗା କଥା । ଯାହାହେଉ, ପ୍ରଥମରୁ ହିଁ ସାବଧାନ ହେବା ଏକାନ୍ତ ଦରକାର ! କହିଲେ, "ଶମ୍ଭୁ, ତମେ ଏକ କାମ କର, ପଛ ପଟଟା ଦେଖିଛ ନା ?"

"ସେ ବର୍ଷ ଏଠାରେ ୬ମାସ କାଳ ଗୁଜରି କରିଥିଲି ପରା ?"

"ଓ ! ହିଁ—ଭଲ କଥା, ତମେ ପଛ ପଟ ଦୁଆର ଖୋଲି ବଗିଚା ଭିତରେ ପ୍ରତୀକ୍ଷା କର—କାହାରିକୁ ଦେଖିଲେ ତତ୍‌କ୍ଷଣାତ୍ ତାର ଅନୁସରଣ କରିବ, ମୋ ଅପେକ୍ଷାରେ ରହିବା ତମର ଦରକାର ନାହିଁ ।"

ଶମ୍ଭୁନାଥ ଓସ୍ତାଦ୍ ପିଲା—ତା ଉପରେ ଅନେକ କାମର ଭାର ଦେଇ ସୁଦାମ ବାବୁ ନିଶ୍ଚିନ୍ତ ରହିପାରନ୍ତି । ସେ ସହଜରେ ଛାଡ଼ିବା ପାତ୍ର ନୁହେଁ, ଜୋକ ପରି ଲାଗିରହିବ ନା ! ଶମ୍ଭୁନାଥ ଚାଲିଯିବା ମାତ୍ରକେ ସୁଦାମ ବାବୁ ଫାଟକରେ ଯାଇ ଧକ୍କା ମାରିଲେ । ଥରେ ଦୁଇ ଥର ନୁହେଁ, ଚାରି ପାଞ୍ଚ ଥର; କିନ୍ତୁ ଜବାବ ନାହିଁ । ଡ୍ରାଇଭରକୁ ହର୍ଣ୍ଣ ଦେବା ପାଇଁ ଆଦେଶ କଲେ । ଶବ୍ଦ ପାଇ କିଛିକ୍ଷଣ ପରେ ଆଖିରୁ ନିଦ ପୋଛି ଦରଜଆନ୍ ଆସି ଫାଟକ ପାଖରେ ଛିଡ଼ାହୋଇ ପଚାରିଲା, "ଆପଣ ?"

"କୁମାର ସାହେବଙ୍କ ଭେଟେଇ ।"

"କେଉଁଠାରୁ ଆସୁଛନ୍ତି ?"

"କେଲ୍ନର ହୋଟେଲରୁ—ଏହିକ୍ଷଣି କୁମାର ସଙ୍ଗରେ ଦେଖାକରିବା ମୋର ନିତାନ୍ତ ଦରକାର—ତାଙ୍କୁ ପଠାଇ ଦିଅ ।"

"ସେ ତ ବସାରେ ନାହାନ୍ତି ।"

"ନାହାନ୍ତି ! ଗଲେ କାହିଁ ?"

"ବାହାରକୁ ଯାଇଛନ୍ତି ।"

"ବାହାରକୁ ? ରାତି ଦୁଇଟା ବାଜିଗଲାଣି— ଫେରି ନାହାନ୍ତି ? ସେ କଣ ବରାବର ବାହାରକୁ ଇମିତି ଯାଆନ୍ତି ?"

"ନା ହଜୁର, ଆଜି ରାୟ ବାହାଦୁରଙ୍କ କନ୍ୟା ନିମନ୍ତ୍ରଣ କରି ନେଇ ଯାଇଛନ୍ତି ।"

"କେତେବେଳେ ଫେରିବେ ?"

"କିଛି କହି ନାହାନ୍ତି ।"

"ଏଠାରେ ଟେଲିଫୋନ ଅଛି ?"

"ଅଛି ।"

"ରାୟବାହାଦୁରଙ୍କ ଠିକଣା ଜାଣ ?

"ଜାଣେ ।"

"ଚାଲ, ଏହିକ୍ଷଣି କୁମାର ସାହେବଙ୍କୁ ଡାକିବାକୁ ପଡ଼ିବ —ବିଶେଷ ଜରୁର କାମ ଅଛି । ଡେରି କଲେ ସର୍ବନାଶ ।"

ଫାଟକ ଖୋଲିବ କି ନା, ଦରଜଆନ ବଗୁରା ଭାବି ଭାବି କିଛି ସ୍ଥିର କରିପାରୁ ନ ଥାଏ । ସୁଦାମ ବାବୁ ଗମ୍ଭୀର ହୋଇ କହିଲେ, "କୁମାର କଣ ଭଦ୍ରଲୋକ ସଙ୍ଗରେ ଇମିତି ବ୍ୟବହାର କରାଇବାକୁ ଶିଖାଇଛନ୍ତି ? ଚଞ୍ଚଳ ଫାଟକ ଖୋଲ୍ ।"

ବଗୁରା ସମ୍ପୂର୍ଣ୍ଣ ଅନିଚ୍ଛାସତ୍ତ୍ୱେ କବାଟ ଖୋଲିଲା । ସୁଦାମ ବାବୁ ଭିତରକୁ ଚାହିଁ ଦେଖିଲେ ଚାକର ଗୋଟିଏ ଅଲ୍‌ଅ ଜଳ ଉଠି ସଙ୍ଗେ ସଙ୍ଗେ ଲିଭିଗଲା । ସୁଦାମ ବାବୁ ପଚାରିଲେ, "ଏଠାରେ ଆଉ କିଏ ଅଛି ?

"କେହି ନାହାନ୍ତି । ସେକ୍ରେଟେରି ବାବୁ ଛୁଟିନେଇ ଯାଇଛନ୍ତି । ଚାକର ଦୁଇ ଜଣ ମଧ୍ୟ ଆଜି ସନ୍ଧ୍ୟାରୁ କୁମାର ସାହେବ ନାହାନ୍ତି ଦେଖି ବେଶ୍‌-ଅଳେ ଆଜ୍ଞା ଦେବା ପାଇଁ ପଳାଇଗଲେ, ମୁଁ ଏକୁଟିଆ ଅଛି ଅଜ୍ଞା ।"

"ଆଉ ଲୋକ କେହି ନାହାନ୍ତି ?"

"ଆଜ୍ଞା ନା— ।"

"ଏହା ତ ଭଲ କଥା! କୁମାର ସାହେବଙ୍କ ପାଖରେ ଟଙ୍କା କଉଡ଼ି ସୁନାରୁପା ଥାଏ—ଇମିତି ବାରଦ୍ୱାର ଛାଡି ଦେଇ ରାତିରେ ବୁଲିବା ସ୍ପଷ୍ଟ

ଅନ୍ୟାୟ । ଆଜି ଆସନ୍ତୁ ସେ, ମୁଁ ସବୁ ଠିକ କରି ଦେଉଛି । ଚାକରଗୁଡ଼ାକ ଫେରିଲେ କବାଟ ଖୋଲିବ ନାହିଁ—ମୁଁ ଦେଖିବି ସେମାନଙ୍କର ଚାକର-ପଣିଆ; ପୂରା ବେତନ ନେଇ ଇମିତି କାମ କରିବେ ନା ?"

ସୁଦାମ ବାବୁଙ୍କର ମାଲିକିଆଣିଆ କଥାରେ ଦରୱାନ୍ ବିଚାରା ଟିକେ ନଇଁପଡ଼ିଲା, ତାଲେ ଗେଟ୍ ଖୋଲିବାକୁ ଡେରି ହେଲା ବୋଲି କୁମାର ସାହେବଙ୍କୁ କିଛି କହୁ ଯଦି ଚାକିରିଟା ଛଡ଼ାଇ ଦିଅନ୍ତି ! ଏତେ ବେଶି ବେତନରେ ଇମିତି ସୁଖର ଚାକିରିଟାଏ ମିଳିବା ତ ସହଜ ନୁହେଁ । ଓଠ ଦୁଇଟି ଭିତରେ ଚାଟି କହିଲା, "ମୁଁ କଣ କରିବି ହଜୁର, ମୋ କଥା ତ ସେମାନେ ଜମା ଶୁଣନ୍ତି ନାହିଁ । ଗେଟ୍ ବନ୍ଦ କରିଲି ସେମାନେ ପଛପଟରେ ବାହାରି ଗଲେ, ମୋ ଅପରାଧ କଣ ?"

"ନା, ତୋର ଅପରାଧ କିଛି ନାହିଁ ଯେ; କିନ୍ତୁ ଦରୱାନ ହୁ— ସବୁଆଡ଼େ ଲକ୍ଷ୍ୟରଖିବା ଉଚିତ ତୋର ।"

"କଣ କରିବି ହଜୁର, ମୋତେ ଗେଟ୍ ବନ୍ଦ କରି ପହରା ଦେବା ପାଇଁ ସେକ୍ରେଟେରି ବାବୁ କହିଯାଇଥିଲେ, ମୁଁ ଫାଟକରେ ଥିଲି ।"

"ଆଚ୍ଛା ହେଉ, କୁମାର ସାହେବ ଫେରିଲେ ସେମାନଙ୍କ ବ୍ୟବସ୍ଥା କରାଯିବ । କୁମାରଙ୍କ ଶୋଇବା ଘର କେଉଁଟା ?"

"ଏହି ଯେ ପାଖ କୋଠରି ।" ସୁଦାମ ବାବୁ ଯାଇ ପରୀକ୍ଷା କରି ଅତି ସହଜରେ ବୁଝି ପାରିଲେ, ଯିଏ କେହି ହେଉ ନା, ଅଳ୍ପକ୍ଷଣ ପୂର୍ବେ ଏଠାରେ ନିଶ୍ଚୟ ଶୋଇଥିଲା; ନହେଲେ ବିଛଣା ପତ୍ରର ଅବସ୍ଥା ଇମିତି ହେବା ଅସମ୍ଭବ । ପଲଙ୍କ ତଳୁ ଧୂଆଁ ଉଠୁଥିଲା ଅଧପୋଡ଼ା ସିଗାରେଟର । ଦରୱାନ୍ ଭିନ୍ନ କେହି ତ ନାହିଁ, ସିଗାରେଟ ପିଇଲା କିଏ ? ସୁଦାମ ବାବୁ ଧମକ ଦେଇ କହିଲେ, "ଦରୱାନ୍ ! ମୋଠାରେ ମିଛ କହିବା ସହଜ ନୁହେଁ, ଏହିକ୍ଷଣି କହୁଥିଲୁ କେହି ଏଠାରେ ନାହାନ୍ତି, ତେବେ ସିଗାରେଟ୍‌ଟା ପିଇଲା କିଏ ?"

ଦରୱାନ୍‌ର ମୁହଁ ଶୁଖିଗଲା—ପ୍ରକୃତରେ ସେ ବିଚାରା କିଛି ଜାଣେ ନାହିଁ; ସୁଦାମ ଧମକ ଦେଇ କହିଲେ, "ସତ କହ ।"

"ହଜୁର, ମିଛ କହି ମୋର ଲାଭ କଣ ? ମୋ ଛଡ଼ା କେହି ଏଠାରେ ନ ଥିଲେ । ମୁଁ ତ ଜୀବନରେ କେବେ ସିଗାରେଟ ପିଇ ନାହିଁ । ସାହେବ ଅଇଁଠା ଖାଇ କଣ ଜାତି ଦେବି ? ବାସ୍ତବିକ ହଜୁର ମୁଁ ବୁଝିପାରୁ ନାହିଁ, କିମିତି କରି ଏଠାକୁ ଅଧପିଆ ଜଳଜଳିଆ ସିଗାରେଟ୍‌ଟାଏ ଆସିଲା ? ନିଶ୍ଚୟ କେହି ଆସିଥିଲା ଏଠାକୁ । ଆସିବ ବା କିମିତି ? ମୁଁ ତ ଶିଡ଼ି ତଳେ ଶୋଇଥିଲି କବାଟ ବନ୍ଦ କରି; ମୋତେ ନ ଉଠାଇ ଉପରକୁ ଆସିବା ସମ୍ଭବ ନୁହେଁ । ତେବେ ଯଦି ଭୂତ ପ୍ରେତ କିଛି—"

"ଠିକ କହୁଛୁ ଦରଜିଆନ, ଭୌତିକ କାଣ୍ଡ—ତେବେ ଚୋର ଦସ୍ୟୁ ଆସିବା ମଧ୍ୟ ଅସମ୍ଭବ ନୁହେଁ । ବଗିଚାରୁ ଆଉ କେହି ଆସି ଯଦି ଶିଡ଼ି ଲଗାଇ ଉପରକୁ ଉଠିଥାନ୍ତି ?"

"ଅଲଗା ଶିଡ଼ି ତ ବଙ୍ଗଳାରେ ନାହିଁ ହଜୁର ।"

"ଯଦି ସେମାନେ ସଙ୍ଗରେ ଆଣିଥାନ୍ତି ଚୋର, ଜିନିଷପତ୍ର ଥରେ ଭଲ କରି ଦେଖାଯାଉ ।"

ଦରଜିଆନ୍ ତତ୍‌କ୍ଷଣାତ୍ ରାଜି ହେଲା । ଏତେ ସନ୍ଧାନରେ ଯେ କାମ ହାସଲ ହେବ, ସୁଦାମ ବାବୁ ଜମା ଭାବି ନ ଥିଲେ । ଏ କୋଠରି ସେ କୋଠରି ବୁଲି ଦେଖିଲେ କାହିଁ କିଛି ନାହିଁ । କେବଳ ଖଣ୍ଡେ ଯୋଡ଼ାର ପୁରୁଣା ଭଙ୍ଗା ବାକ୍‌ସ ମାନ ପଡ଼ି ରହିଛି ଦେଖି ଦରଜିଆନ୍ ଷଚର ମୁଣ୍ଡରେ ହାତ ଦେଇ ବସିଲା । କୁମାର ସାହେବ ଫେରିଲେ ତାହାକୁ ହିଁ ଯେ ଚୋର ବୋଲି ପୁଲିସରେ ଦେବେ । କଣ କରିବ ସେ ? ବିଚରା ସୁଦାମ ବାବୁଙ୍କ ଗୋଡ଼ ତଳେ ପଡ଼ି ଭେଁ ଭେଁ କରି କାନ୍ଦିଉଠିଲା । ସୁଦାମ ବାବୁ କହିଲେ, "ଶୁଣ, ଯଦି ମୋ କଥା ମାନି ଚଳିବୁ, ତେବେ କିଛି ହେବ ନାହିଁ । ମୁଁ ତମକୁ ବଞ୍ଚାଇବା ପାଇଁ ଯେତେ ଟଙ୍କା ଖର୍ଚ୍ଚ ହେବ ଦେବି; କିନ୍ତୁ ମୋ କଥା ଆଜି ଅଜି କୁମାର ସାହେବଙ୍କୁ ଜମା କହିବ ନାହିଁ । ମୁଁ ବଗିଚା ପଟରେ ବାହାରି ଯାଉଛି । ଦେଖେ, ଯଦି କିଛି ସନ୍ଧାନ ମିଳେ । ମୁଁ କାଲି ସକାଳେ ଆସି କୁମାର ସଙ୍ଗରେ ଦେଖା କରିବି, ବୁଝିଲ ।"

"ଆଜ୍ଞା ମୁଁ କଣ କହିବି ? ମୋତେ ଯଦି ଚୋର ବୋଲି ଧରନ୍ତି, ତେବେ ଉପାୟ ?"

"ତମକୁ କିଛି କରିବାକୁ ହେବ ନାହିଁ; କେବଳ ଲୁଚି ହୋଇ ଥାଅ। ମୋର ନାମ କିନ୍ତୁ ଆଉ ପ୍ରକାଶ କଲେ ତମେ କର୍ମ ଢମେ ଭୁଞ୍ଜିବ, ବୁଝିଲ ?" ଏହା କହି ସୁଦାମ ବାବୁ ବଗିଗୃ ଭିତରକୁ ଗୃଲିଗଲେ ଯଦି ଶମ୍ଭୁ ଥାଏ; କିନ୍ତୁ କାହିଁ ବା ଶମ୍ଭୁ, କାହିଁ ବା କିଏ ? ସୁଦାମ ବାବୁଙ୍କର ବୁଝି-ବାକୁ ଡେରି ହେଲା ନାହିଁ ଯେ, ଶମ୍ଭୁନାଥ ତାହାର ଅନୁସରଣ କରିଛି। କୁମାରୀ ମଧ୍ୟ ଅତି ଅଶ୍ଲୀଳ ଭିଡ ପଳାଇବା ପାଇଁ ପ୍ରସ୍ତୁତ ହେଉଛନ୍ତି—ଇନସ ପର ସେଥିପାଇଁ ଲୁଣ୍ଠାଇ ଦିଆଗଲା। ଏଠାରେ ଆଉ ଡେରି କରିବାର ପ୍ରୟୋଜନ ନାହିଁ, ଯଦି ଶମ୍ଭୁନାଥ କୌଣସି ସମ୍ବାଦ ନେଇ ଯାଇଥାଏ।

ସୁଦାମ ବାବୁ ଚଞ୍ଚଳ ବାହାର ପଡି ଘରକୁ ଗୃଲିଲେ।

ସେତେବେଳେ ଶମ୍ଭୁନାଥ ଆରାମ ଚେୟାରରେ ବସି ଆରାମରେ ଗୁଡ଼ୁକ ମାରୁଛି। ସୁଦାମ ବାବୁ ଯାଇ ତାକୁ ଚେତା କରି ପଚାରିଲେ, "ଖବର କଣ ?"

"ସବୁ ଭଲ।"

"ଅରେ ଭଲ କଣ ମ ? କଣ ଦେଖିଲ ?"

"ପଛ ପଟରେ ପ୍ରକାଣ୍ଡ ଗୋଟାଏ ଟ୍ରକ ଛିଡ଼ା ହୋଇଥିଲା—ଟ୍ରକ ତଳେ ପଶି ଚୁପ୍‌ଚାପ୍ ଶୋଇ ରହିଲି। ଭିତରୁ ଗୋଟାଏ ଦୁଇଟା କରି ପ୍ରାୟ ୨୦।୨୫ଟା ବାକ୍‌ସ ଆଣି ୩୪ ଜଣ ଲୋକ ସେଥିରେ ଥୋଇଦେଲେ। ପୁଣି ସେମାନେ ଭିତରକୁ ଗୃଲିଗଲା ବେଳେ ୨ଟା ବାକ୍‌ସର ମଝିରେ ମୁଣ୍ଡ ପୋଛି ବସି ରହିଲି; ଆଉ ଥରେ ୩ଟା ବାକ୍‌ସ ଆଣି ମୋ ମୁଣ୍ଡ ଉପରେ ଥୋଇଦେବା ମାତ୍ରକେ ସେମାନେ ଗୃଲିଗଲେ।"

"କାହାରିକୁ ଚିହ୍ନିପାରି ନାହିଁ ?"

"ଅୟାର ସାହେବ ଥିଲା ଯେ"—

"ଆୟାର ?"

"ବ୍ଲାକ୍‌ଗାର୍ଡ କମ୍ପାନୀର।"

"ଓ ! ସେ ଅଛି ଏଠି?"

"ମୁଁ ତ ଦେଖିଲି ଥିଲା ସେ। ଧାଇଁ ଆସି ଗାଡିରେ ବସି ପଡ଼ି ଡ୍ରାଇ-ଭରକୁ ଗାଡ଼ି ଛାଡ଼ିବା ପାଇଁ ହୁକୁମ କଲା। ମୁଁ ଆରାମରେ ବସି ତାଙ୍କ

ଦୋକାନକୁ ଆସିଲି । ଅସ୍କାର ସାହେବ ଦୋକାନ ଦୁଆରେ ତିନଥର ଠକ୍ ଠକ୍ ଶବ୍ଦ କରିବା ମାତ୍ରକେ ବୁଢ଼ା ସାହେବ ବାହାରି ପଡ଼ିଲେ । ସେ ଇମିତି ଛଦ୍ମବେଶ ଧରିଥିଲେ ଯେ, ବୁଢ଼ା ସାହେବ ତା ମୁହଁକୁ ଚାହିଁ ତାଟକା ହୋଇ ରହିଲେ । ମାଲଗୁଡ଼ାକ କେଉଁଠି ରଖା ହେବ, ପଚାରିବାରୁ ଅସ୍କାର ସାହେବ କହିଲେ—

"ଜାହାଜର ଲୋକଗୁଡ଼ା କାହାନ୍ତି ?"

"ଶୋଇଛନ୍ତି ।"

"ଡାକ, ଏହିକ୍ଷଣି ମାଲପତ୍ର ସବୁ ନେଇଯାନ୍ତୁ ସେମାନେ" କହୁ କହୁଁ ଭିତରକୁ ଚାଲିଗଲେ । ଅବସର ପାଇ ମୁଁ ଘରକୁ ଧାଇଁଲି ।

—୧୪—

ଦିନ ଦିନ ରାୟ ବାହାଦୁରଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ଉଠିଲା—ଠିକ୍ ପାଗଳ ପରି କହିଲେ ଚଳେ । ହେବାର ତ କଥା—ଝାଳବୁହା ଧନ, ପ୍ରାୟ ଦେଢ଼ କି ଦୁଇ ଲକ୍ଷ ଦିବାକୁ ବସିଛି । ତାପରେ ପୁଣି ସୁରୁଚିର ଅପମାନ ଦୁର୍ନାମ, ଲୋକନିନ୍ଦା ! ଜୀବନର ସମ୍ବଳ, ଏକମାତ୍ର ଆଦରର ଝିଅ ପ୍ରମୀଳାର ମଧ୍ୟ ପତ୍ତା ନାହିଁ । ଚାକରବାକର ସମସ୍ତେ ତାଙ୍କ ଭୟରେ ତଟସ୍ଥ—କାରଣରେ ଅକାରଣରେ ଯାହାକୁ ଆଗରେ ପାଉଛନ୍ତି, ତାହାକୁ ହିଁ ବେଶ ଦୁଇ ଚାରି ପଦ ଶୁଣାଇ ଦେଇ ମାରିବାକୁ ଧାଉଁଛନ୍ତି । ରୁଦ୍ରମୂର୍ତ୍ତି—ତାଙ୍କୁ ଶାନ୍ତ କରିପାରେ କେବଳ ନବନିଯୁକ୍ତ ଭୃତ୍ୟ—ରାମରେଖା । ତା ଆଖିରେ କଣ ଗୋଟାଏ ମୋହନୀ ଶକ୍ତି ରହିଛି ? ସେ କଣ ମନ୍ତ୍ରସିଦ୍ଧ ? ରାୟବାହାଦୁରଙ୍କ ଆଖିରେ ଆଖି ପଡ଼ିବା ମାତ୍ରକେ ସେ ଅସହାୟ ଶିଶୁ ପରି ସରଳ ହୋଇଉଠନ୍ତି । ଦୁଇ ଦୁଇ ଦିନକାଳ ପଥରେ ବିପଥରେ ବୁଲି ବୁଲି ରାୟ ବାହାଦୁର ଅଧୈର୍ଯ୍ୟ ହୋଇପଡ଼ିଲେ ସତ; କିନ୍ତୁ ତାଙ୍କ ଦେହ ରୋଗମୁକ୍ତ ହେଲା ଭଳିଆ ଜଣାପଡ଼ିଲାଣି । ସେ ମୂର୍ଚ୍ଛା ବୁଲି ନାହିଁ—ଅରୁଚି ନାହିଁ—ଅବସାଦ ନାହିଁ । ତାଙ୍କଠାରୁ ଅଳ୍ପ ସମୟ ପାଇଁ ବିଦାୟ ନେଇ ରାମରେଖା ଧାଇଁଲା ଗୁରୁଦେବ ସୁଦାମ ବାବୁଙ୍କ ବସାକୁ । ସୁଦାମ ବାବୁ ସେତେବେଳେ ପୋଲିସ କମିସନରଙ୍କ ଅଫିସରେ । ସେ ସ୍ୱାଧୀନ ବ୍ୟକ-

ସାମ୍ନୀ ହେଲେ ମଧ୍ୟ ପୋଲିସ କମିସନରଙ୍କୁ ଯଥେଷ୍ଟ ସମ୍ମାନ କରନ୍ତି ତାଙ୍କ ଗୁଣରେ—ବ୍ୟବହାରରେ । ଅଧିକାଂଶ ପୋଲିସ କର୍ମଚାରୀ ଯେପରି ଦୋଷୀ ହେଉ, ନିର୍ଦ୍ଦୋଷ ହେଉ, ଯାହାକୁ ପାରନ୍ତି ଧରି ନେଇ ଦଣ୍ଡ ଦିଆଇପାରିଲେ ନିଜେ ନିଜକୁ କୃତାର୍ଥ ଭାବନ୍ତି—କମିସନର ସାହେବ ସେ ଦଳର ଲୋକ ନୁହନ୍ତି । ସତ୍ୟ ଅନ୍ୱେଷଣ ପାଇଁ ପ୍ରାଣପାତ ପରିଶ୍ରମ କରନ୍ତି ସେ । ସେ ଚାହାନ୍ତି ଦୋଷୀର ଦଣ୍ଡ—ନିର୍ଦ୍ଦୋଷର ମୁକ୍ତି । ବୃଥା ଲୋକଙ୍କୁ ହଇରାଣ କରିବା ନୀତିବିରୁଦ୍ଧ ବୋଲି ସଂପୂର୍ଣ୍ଣ ବିଶ୍ୱାସ ତାଙ୍କର । ସୁଦାମ ବାବୁ ମଧ୍ୟ ଠିକ୍ ସେହି ପ୍ରକୃତିର ଲୋକ । ସମପ୍ରକୃତିର ବନ୍ଧୁତ୍ୱ ଅଚ୍ଛେଦ୍ୟ । କମିସନର ସାହେବ କର୍ତ୍ତବ୍ୟନିଷ୍ଠ ବୋଲି ସୁଦାମ ବାବୁ ତାଙ୍କୁ ଯଥେଷ୍ଟ ବହୁମାନ୍ୟ କରନ୍ତି; ତାଙ୍କ ବନ୍ଧୁତ୍ୱରେ ସୁଦାମ ବାବୁଙ୍କର ମଧ୍ୟ ଅନେକ ଉପକାର ହୁଏ । ପୋଲିସ ବିଭାଗରେ ତାଙ୍କର ଅପ୍ରତିହତ ଗତି; ଏଥିପାଇଁ ଅନେକ କର୍ମଚାରୀ ତାଙ୍କୁ ଅନ୍ତରରେ ହିଂସା କଲେ ମଧ୍ୟ ବାହାରେ ଯଥେଷ୍ଟ ସମ୍ମାନ କରନ୍ତି । କାରଣ ତାଙ୍କ ଆଦେଶ ପାଳନରେ ଦ୍ୱିଧା କଲେ ଚାକିରି ରହିବା ଯେ କଠିନ, ତାହା ସମସ୍ତେ ଭଲରୂପେ ବୁଝି ପାରିଥିଲେ ।

କମିସନର ଗୋଟିଏ ଫାଇଲ ଟାଣିନେଇ ଦୁଇତିନି ମିନିଟ ନିରବ ମନରେ ପଢ଼ି କହିଲେ, "ସୁଦାମ ବାବୁ, ବଡ଼ ଆଶ୍ଚର୍ଯ୍ୟ ବ୍ୟାପାର ଘଟିଛି ଏଠି । ୧୨ ତାରିଖ ରାଉଣ୍ଡ ଦେଇ ଫେରିବା ବେଳେ କନଷ୍ଟେବଲ ସୁରଦାସ ନଈ କୂଳରେ ଗୋଟାଏ ମୋଟର ଦେଖି ପାଖକୁ ଗଲା । ଗାଡ଼ିରେ ଲୋକବାକ କାହାରିକୁ ନ ଦେଖି ତାର କମିତି ଗୋଟାଏ ସନ୍ଦେହ ହେଲା—ହେବା ହିଁ ସ୍ୱାଭାବିକ । ରାତି ପ୍ରାୟ ତିନିଟା ସାଢ଼େ ତିନିଟା, ଏପରି ସମୟରେ ଏଠାରେ କାର ଗାଡ଼ି ପଡ଼ି ରହିଛି ? ଘଣ୍ଟି ଦେଲା, ଉତ୍ତର ନାହିଁ; ଚାରିଆଡ଼େ ବୁଲି ବୁଲି ଦେଖିଲା, କାହିଁ କେଉଁଠି ଲୋକବାକ କେହି ନାହାନ୍ତି । ହେଲା କଣ ? ପାଖରେ ରକ୍ତର ଦାଗ ରହିଛି; କିନ୍ତୁ ଟର୍ଚ୍ଚ ଆଲୁଅରେ ରକ୍ତ ବୋଲି ବୁଝିପାରି ନ ଥିଲା ସେ । କାହାରିକୁ ନ ପାଇ ବିରକ୍ତ ହୋଇଉଠିଲା । ନିଜ ଖିଆଲରେ ପଛପଟୁ ଗାଡ଼ିଟା ଧରି ପେଲିବା ମାତ୍ରକେ ଗାଡ଼ିତଳରୁ କ୍ଷୀଣ କଣ୍ଠରେ ଗଁ ଗଁ ଶବ୍ଦ ହେଲା—ତତ୍‌କ୍ଷଣାତ୍ ସିଟି ମାରିଲା । ସବ୍‌ଇନ୍‌ସପେକ୍ଟର

ମୋହନ୍ତି ବାବୁ ଶୁଣିପାରି ତା ପାଖକୁ ଧାଇଁଲେ । ଦୁହେଁ ମିଳାମିଶି କରି ଗାଡ଼ି ତଳୁ ଟାଣି ଓଟାରି ବାହାର କଲେ ଗାଡ଼ିର ଡ୍ରାଇଭରକୁ । ହାତଗୋଡ଼ ମୁହଁ ସବୁ ତାର ବନ୍ଧାଛନ୍ଦା । ଖୋଲିଦେଇ ପ୍ରାୟ ଅଧଘଣ୍ଟାଏ କାଳ ଶୁଶ୍ରୂଷା କରିବାରୁ ସେ ପ୍ରାଣ ପାଇଲା । ମୁଁ ଯେତେ ଦୂର ଶୁଣିଲି, ଆଉ ଅଳ୍ପ ସମୟ ଯାଇଥିଲେ ବିଚରା ମରିଯାଇଥାନ୍ତା ? ମୋହନ୍ତି ବାବୁ ତାକୁ ସଚେତ କରି ପଚାରିଲେ, "କାର ଗାଡ଼ି ?"

ଡ୍ରାଇଭର ସୁରଜମଲ କହିଲା, "ରାୟବାହାଦୁର ଯୋଗୀନ୍ଦ୍ର ବାବୁଙ୍କର ।"

ଯୋଗୀନ୍ଦ୍ର ବାବୁଙ୍କ ନାମ ଶୁଣି ମୋହନ୍ତି ବାବୁ ଅନ୍ତରେ ଅସ୍ଥିର ହେଲେ । ରେଙ୍ଗୁନ ସହରରେ ରାୟ ବାହାଦୁରଙ୍କୁ ନ ଜାଣେ, ଏମିତି ଲୋକ ନାହିଁ କହିଲେ ଚଳେ । ସ୍ୱନାମଧନ୍ୟ ପୁରୁଷ, ଚରିତ୍ରବାନ୍; ନ୍ୟାୟର ଅବତାର କହିଲେ ଅତ୍ୟୁକ୍ତି ହୁଏ ନା । ତାଙ୍କୁ ନ ଜାଣେ କିଏ ?

ଡ୍ରାଇଭର କହିଲା, "ପ୍ରାୟ ୫ଟା କି ୫୍ଟା ବେଳେ ରାୟ ବାହାଦୁରଙ୍କ କନ୍ୟାକୁ ନେଇ ସେ କୁମାର ଧୂର୍ଜଟିପ୍ରସାଦଙ୍କ ବସାକୁ ଗଲା ଆମନ୍ତ୍ରଣ କରିବା ପାଇଁ । ପ୍ରମୀଳା ତାଙ୍କୁ ନେଇ 'ଠକ' ଦେଖିବାକୁ ଯିବେ କି ନା । ଯାଉଁ ଯାଉଁ ବାଟରେ ଜଣେ ସର୍ଜନ ଇସାରା କରି ଗାଡ଼ି ଛିଡ଼ା କରାଇଲା । କୁମାରଙ୍କ ସଙ୍ଗରେ ସେ କଣ କଥାଭାଷା କଲା; ଡ୍ରାଇଭର କିଛି ଶୁଣି ନାହିଁ । ମାତ୍ର ପ୍ରମୀଳା ଥରେ ଜୋର କରି ଉଠିଲେ ବୋଲି ତାର ସ୍ମରଣ ହୁଏ । ସର୍ଜନ ଡ୍ରାଇଭର ପାଖରେ ଆସି ବସିଲା । ସେ ବିଚରା ଭାବିଲା ବୋଧହୁଏ କୁମାର ସାହେବଙ୍କ ପରିଚିତ କେହି ହେବ । ଗାଡ଼ିଟା ଅଳ୍ପ ବାଟ ଯାଉଁ ଯାଉଁ ହଠାତ୍ ତା ବାହୁରେ ଛୁଞ୍ଚିରେ ଫୋଡ଼ିଲା ଭଳି ଯନ୍ତ୍ରଣା ଅନୁଭବ କଲା ସେ । ତାପରେ କଣ ହେଲା କିଛି ଜାଣେ ନାହିଁ; ହଠାତ୍ ଗାଡ଼ି ହଲି ତା ଦେହରେ ଆଘାତ ଲାଗିବାରୁ ସେ ଗୁଁ ଗୁଁ ଶବ୍ଦ କରି ଉଠିଲା ।

ମୋହନ୍ତି ବାବୁ ସକାଳେ ଦେଖିଥିଲେ, ଗାଡ଼ି ପାଖରେ ରକ୍ତର ଦାଗ; କିନ୍ତୁ ଆଜିଯାଏ କେହି ଖୁନ ହୋଇଥିବା ସମ୍ବାଦ ମିଳି ନାହିଁ କ୍ରିମିନାଲ ଇନ୍‌ଭେଷ୍ଟିଗେସନ ଡିପାର୍ଟମେଣ୍ଟ ଏକଜାମିନର ରିପୋର୍ଟ ମଧ୍ୟ ଆସି ନାହିଁ । ରାୟ ବାହାଦୁରଙ୍କ ପାଖକୁ ମୋହନ୍ତି ବାବୁଙ୍କୁ ପଠାଇଥିଲି । ମୋର ମନେହୁଏ, ରାୟ ବାହାଦୁର କଣ ଗୋଟାଏ ଲୁଚାଇବା ପାଇଁ ବଡ଼ ବେଶି ବ୍ୟସ୍ତ । ତାଙ୍କ କନ୍ୟା ସଙ୍ଗରେ

ଦେଖା କରିବା ପାଇଁ ମୋହନ୍ତି ବାବୁ ଅନୁମତି ଖୋଜିଲେ । ସ୍ୱପ୍ନ ବାହା-ଦୁର କହିଲେ, "ସେ ମନୋହରପୁର ଯାଇଛି ।" "ଗାଡିଟା ଆପଣଙ୍କର ନେଇ ଯାଇଥିଲି କିଏ ?" ପଚାରିବାରୁ ସେ କହିଲେ, "ଡ୍ରାଇଭର ପୂର୍ବେ ମୋର ଅନେକ ଭଲ କାମ କରିଥିଲା । ସମ୍ପ୍ରତି ତାର ସ୍ୱଭାବଚରିତ୍ର ଖରାପ ଦେଖି, ତାକୁ କାଃସମ୍ବଳ ଅବସ୍ଥାରେ ନ ଛାଡ଼ି ଏ ଗାଡ଼ିଟା ମୁଁ ତାକୁ ପୁରସ୍କାର ଦେଇଛି ଆଜକୁ ୧୦ । ୧୨ ଦିନ ହେଲା । ପ୍ରମିଳା ଇଚ୍ଛା ଗାଡିରେ ବୁଲିବାକୁ ଯିବ, ମୋର ଜମା ବିଶ୍ୱାସ ହେଉ ନାହିଁ । ସେ ତ ଏଠାରେ ନାହିଁ । ତାଙ୍କ କଥାରୁ ଜଣାପଡ଼େ, ସେ ଗୋଟାଏ କଣ ଗୋପନ କରିବାକୁ ବଡ଼ ବ୍ୟସ୍ତ ।"

"ମୁଁ ତ ଏ ସମ୍ବନ୍ଧରେ ଅନେକ କଥା ଜାଣିଛି । ପ୍ରକୃତରେ ତାଙ୍କ ଯୁବତୀ କନ୍ୟାର ନାମ ଏଥି ସଙ୍ଗରେ ଯୋଡ଼ିବାକୁ ଏକାନ୍ତ ଅନିଚ୍ଛୁକ ସେ । ମୁଁ ମଧ୍ୟ ତାଙ୍କ ନାମ ଗୋପନ କରି ଦୋଷୀର ଦଣ୍ଡ କରାଇବି ବୋଲି ପ୍ରତିଜ୍ଞା-ବଦ୍ଧ । ଏଣୁ କେତେକ ଅଂଶ ଗୋପନ ରଖିବା ପାଇଁ ଆପଣଙ୍କୁ ମଧ୍ୟ ଅନୁରୋଧ କରୁଥିଲି । ଏଥି ସଙ୍ଗରେ ଆହୁରି ଅନେକ ଘଟଣା ଜଡିତ ଅଛି ବୋଲି ମୋର ବିଶ୍ୱାସ, ସମୟରେ ସବୁ ଜାଣିପାରିବେ ।"

"ଅଳ୍ପ ଦିନ ପରେ ବିଚାର ଯିବ, ଶୁଣିଛ ତ ? ଏ ଜଟିଳ ମକ-ଦ୍ଦମାର ନିଷ୍ପତ୍ତି ଦେଖିପାରିଲେ ବଡ଼ ସୁଖୀ ହେବି । ତମକୁ ମୋର ଆନ୍ତରିକ ଅନୁରୋଧ, ଏ ମକଦ୍ଦମାଟା ତମେ ଭଲ କରି ଚଳାଇଲେ ମୋହନ୍ତି ବାବୁ ତମକୁ ସାହାଯ୍ୟ ମଧ୍ୟ କରିବେ ।"

ସୁଦାମ ବାବୁ ଠୋ ଠୋ କରି ହସି ଉଠି କହିଲେ, "ଭଲ କଥା, ମୋହନ୍ତି ବାବୁଙ୍କ ସାହାଯ୍ୟ ମିଳିଲେ ଟିକିଏ ସୁବିଧା ହେବ, କିନ୍ତୁ ଆପଣଙ୍କୁ ଗୋଟିଏ ସର୍ତ୍ତରେ ରାଜି ହେବାକୁ ପଡ଼ିବ ଯେ ।"

"କଣ ?"

"ଏହି ମକଦ୍ଦମାରେ ଯେଉଁ ଅଂଶ ମୁଁ ଗୋପନ ରଖିବାକୁ ଇଚ୍ଛା କରିବି, ତା ସମ୍ପୂର୍ଣ୍ଣ ଗୁପ୍ତ ରହିବ ।"

"ଏହି କଥା ? ଅଚ୍ଛା ମୁଁ ରାଜି ଅଛି, କିନ୍ତୁ କୌଣସି ଦୋଷୀକୁ ତମେ ମୁକ୍ତି ଦେବାର ଚେଷ୍ଟା କରିବ ନାହିଁ—ପ୍ରତିଜ୍ଞା କର ।"

"ମୁଁ ସବୁବେଳେ ଏଥିରେ ଯାଏ।"

"ବେଶ୍, ମୁଁ ମଧ୍ୟ ଯାଏ।"

"ତେବେ ମୋହନ୍ତ ବାବୁଙ୍କ ସାହାଯ୍ୟରେ ଦରକାର ନାହିଁ; କିନ୍ତୁ ଯେତେବେଳେ ଯେଉଁ ଅଫିସରଙ୍କ ସାହାଯ୍ୟ ଲୋଡ଼ିବ, ତତ୍‌କ୍ଷଣାତ୍ ମିଳିଯାଇପାରେ।"

"ଆଜି ?"

"କିଛି ନା।"

"ବାପ୍, ଏତିକି ?"

"ଏହା ହିଁ ଯଥେଷ୍ଟ।"

ପ୍ରହରୀ ଆସି ଗୋଟିଏ Visiting card ଧରାଇଦେଲା।

ସୁଦାମ ବାବୁ କହିଲେ, "ଡାକ।" ଦରଜାଆଡ଼େ ଚାହିଁବା ମାତ୍ରକେ କମିସନର ସାହେବ ପଚାରିଲେ, "କିଏ ସେ ମ ?"

"ଦେଖିବେ ଯେ।"

ଆସିଲା ଜଣେ ଚାକର। ସୁଦାମ ବାବୁ ତା ମୁହଁକୁ ଚାହିଁ ଚେୟାରଟାଏ ଦେଖାଇ ଦେଲେ। କମିସନର ସାହେବ ଅବାକ୍! ଇଏ କଣ—କି ମିଛ ଭଦ୍ରତା ? ତାଙ୍କ ଆଗରେ ଜଣେ ସାଧାରଣ ଚାକରକୁ ଚେୟାରରେ ବସାଉଛନ୍ତି, ସୁଦାମ ବାବୁ !

ସୁଦାମ ବାବୁ କମିସନରଙ୍କ ମୁହଁକୁ ଚାହିଁ ତାଙ୍କ ମନୋଭାବ ବୁଝିପାରି କିଛି ନ କହି ଭୃତ୍ୟକୁ ପଚାରିଲେ, "ହଠାତ୍ ଯେ ?"

"କଥା ଅଛି।"

"ଅକ୍ଳେଶରେ କହିପାର।"

"ବଟିକାଗୁଡ଼ାକ ସବୁ ବାହାର କରି ନେଇଛି ସଞ୍ଜବେଳେ, ତା ମଜା ଦେଖେ କିଏ ? ଏ ବାକ୍‌ସ, ସେ ବାକ୍‌ସ ଖୋଜି ଚେୟାର ଟେବୁଲ ଫିଙ୍ଗା-ଫାଙ୍ଗି ଲଙ୍କାକାଣ୍ଡ ହେଲା। ବୁଢା କିନ୍ତୁ ଦିନ ଓଳି ସେ ଔଷଧ ନ ଖାଇ ଅନେକଟା ଭଲ। ଦିନସାରା ଧାଇଁ ବୁଲୁଛି ଠିକ ୧୬ ବରଷିଆ ପିଲା ପରି। ତା ରାଗରେ ସମସ୍ତେ ତଟସ୍ଥ। ବଟିକା ଖୋଜି ତ ଦୁଇବିନ ପାଇଲା ନାହିଁ—ରାତି ୧୧ଟା ବେଳେ ବାହାରି ପଡ଼ିଲା। ମୁଁ ତ ଠିକ୍ ଦୁଆରେ ଶୋଇଥାଏଁ; ତାକୁ

ଦେଖି ଅନ୍ଧାର ଜୋରରେ ଘୁଙ୍ଗୁଡ଼ି ମାରିଲି । ସେ ପଛପଟରେ ଗେଟ୍ ହୋଇ ବାହାର ଯିବା ମାତ୍ରକେ ତା ପିଛା ଧରିଲି । ସେ ଯାଇ ଉଠିଲା ଗୋଟିଏ କମ୍ପାନି ଦୋକାନରେ !”

“କେଉଁ କମ୍ପାନି କହନା ?”

କହିବାକୁ ଇତସ୍ତତଃ କରୁଛୁ ଦେଖି ସୁଦାମ ବାବୁ କହିଲେ, “ଏହାଙ୍କ ଆଗରେ କହିବାକୁ ବର୍ତ୍ତମାନ ବାଧା ନାହିଁ ।”

କମିସନର ସାହେବ ପଚାରିଲେ, “କିଏ ଏ ମ ?”

ସୁଦାମ ବାବୁ ହସିଉଠି କହିଲେ, “ଶମ୍ଭୁ ।”

ସେ ଧାଇଁଯାଇଁ ତା ପିଠିରେ ଚାପୁଡ଼ା ମାରି କହିଲେ, “ଚମତ୍କାର, ଚମତ୍କାର, ଶମ୍ଭୁ ମୁଁ ଭବିଷ୍ୟତ ବାଣୀ କରୁଛୁ, ଦିନେ ମୋ ଆସନ ତମପାଇଁ ଖୋଲା ରହିବ—ଏ କଥା ଅତି ସ୍ୱତଃସିଦ୍ଧ । ଅଜି ମୋ ଆଖିରେ ତମେ ଧୂଳି ଦେଲ, ଯା କେହି କେବେ ପାରି ନାହାନ୍ତି—ତମ ଗୁରୁ ସୁଦାମ ବାବୁ ପର୍ଯ୍ୟନ୍ତ ନହନ୍ତି ।”

ସୁଦାମ ବାବୁ ପଚାରିଲେ, “କେଉଁ କମ୍ପାନି ? ବ୍ଲାକ୍ ବାର୍ଡ ?

“ହଁ—ଆପଣ ବସି କଣ କରୁଥିଲ, ଭୁବନ ବାବୁ ଯାଇ ସବୁଜ ଆଲୁଅ ଦେଖାଇ ଚୁଁ ଚୁଁ ଶବ୍ଦ କରିବା ମାତ୍ରକେ ଫାଟକ ଖୋଲିଗଲା । ମୁଁ ତ ପଛରେ ଅଛି , ସେମାନେ କବାଟ ବନ୍ଦ କରି ଚାଲିଗଲେ । ମୁଁ ଉପରକୁ ଉଠି ଡେଇଁ ପଡ଼ି ପୁଣି ପିଛା ଧରିଲି । ଭୁବନ ବାବୁ କହିଲା, ‘ବଟିକା ମିଳୁ ନାହିଁ, ଅଉ ଗୋଟାକେତେ କଡ଼ାନ୍ତ ଦରକାର ଯେ—’ ଆପଣ ପଚାରିଲେ, “ବଟିକା ଗୁଡ଼ାକ ହେଲା କଣ ?”

‘ମିଳୁ ନାହିଁ ।’

‘ରଖିଥିଲ କାହିଁ ?’

‘ବାକ୍ସ ଭିତରେ ।’

“ବୁଢ଼ା ଅଛି କମିତ ?”

“ଖୁବ ଭଲ; ତିନି ଦିନ ଔଷଧ ପାଇ ନାହିଁ ।”

“ସର୍ବନାଶ । ଆଜ ଦୁଇ ଦିନ ଗଲେ ଔଷଧର ସବୁ ପ୍ରକ୍ରିୟା ଏକାବେଳକେ ନଷ୍ଟ ହୋଇଯିବ । ଆଦ୍ୟରୁ ପୁଣି ଖଣ୍ଡି ବାଣୀ ଅରମ୍ଭ

କରିବାକୁ ପଡ଼ିବ । ଔଷଧ ତ ମୋ ପାଖରେ ଆଉ ନାହିଁ । ନ ହୁଏ ଅଳ୍ପ ମାସେ ଅଧେ ଡେରି ହେବ, ସେଥିପାଇଁ କିଛି ଯାଏ ନାହିଁ; କିନ୍ତୁ ବାକ୍ସରୁ ଔଷଧଟା ଗଲା କାହିଁ ? ଆଉ କିଛି ଯାଇଛି ?"

"ନା !"

"ତେବେ ଯେ ଚୋରି କରିଛି, ସେ ନିଶ୍ଚୟ ତମ ଔଷଧ ପାଇଁ ।"

"ଔଷଧ କିଏ ଚୋରି କରିବ ?"

"ତେବେ ଗଲା କାହିଁ ? ତମେ ସାବଧାନ ହୁଅ, ଭୁବନ ବାବୁ ! ମୋର ବିଶ୍ୱାସ, ନିଶ୍ଚୟ ତମ ପଛରେ ଝିଟିପିଟି ଲାଗିଛି । କହିଲ, ତମ ଘରକୁ କେହି ନୂଆ ଲୋକ ଆସିଥିଲେ କି ନା ?

ସେ କହିଲା—"କାହିଁ, କେହି ତ ଆସି ନାହାନ୍ତି ।"

"ଚାକର ଚାକରାଣୀ—"

"ହିଁ ହିଁ, ଜଣେ ନୂଆ ଚାକର ବାହାଲ ହୋଇଛି ସତ ।"

"ତାକୁ ସାବଧାନ, ନିଶ୍ଚୟ ସେ ଝିଟିପିଟି କମ୍ପାନୀର ଲୋକ । ମୁଁ ଶୀଘ୍ର କଲିକତା ଯାଇ ଔଷଧ ପଠାଇଦେବି; କିନ୍ତୁ ସେଥିପାଇଁ ୫ଟି ହଜାର ଟଙ୍କା ଦରକାର, ବୁଝିଲ ?

ସୁଦାମ ବାବୁ ପଚାରିଲେ "ଟଙ୍କା ଦେଲା କିଏ ?"

"କେହି ଦେଇ ନାହାନ୍ତି—ତେବେ କଲିକତାରେ ପରେ ଭୁବନ ପଠାଇ ଦେବ କହିଛି ।"

"ଭଲ କଥା—ତେବେ ବେଶି ବ୍ୟସ୍ତ ହେବାକୁ ପଡ଼ିବ ନାହିଁ ।"

କମିସନର ସାହେବ ଅବାକ୍ ହୋଇ ସୁଦାମ ବାବୁଙ୍କ ମୁହଁକୁ ଚାହିଁଲେ ।

ସୁଦାମ କହିଲେ, "କଲିକତାର ଟିକଣା ପାଇବା ପାଇଁ ଗୋଟାଏ ଦୁର୍ଭାବନା ଗଲା ।"

ଶମ୍ଭୁ କହିଲା, "ମୁନ୍ନିକୁ ଏଠାରେ ଗିରଫ କଲେ ?"

ସୁଦାମ ରାଗିଯାଇ କହିଲେ, "ବେକୁଫ୍ ଅପରାଧ ? ଦେଖା ଯାଉନା, କାହିଁ ଯାଉଛନ୍ତି ସେମାନେ ? କଣ କରନ୍ତି ? ଭୁବନକୁ ବରାବର ଲକ୍ଷ୍ୟ ରଖିଥିବ ।"

କମିସନର ସାହେବ ପଚାରିଲେ, "ଲୁବନଟା କିଏ ମ ?"

"ରାୟ ବାହାଦୁରଙ୍କ ପୁତୁରା, ବିପୁଳ ସମ୍ପତ୍ତି ଭୋଗର ଅଂଶୀ ସେ—"

"କିଏଁ ? ତାଙ୍କ କନ୍ୟା ତ ବର୍ତ୍ତିମାନ ।"

"ସେ ମଧ୍ୟ ତ ନିରୁଦ୍ଦେଶ । ମୁଁ ଏ ମକଦ୍ଦମାଟା ଧରୁଛି । ରାୟବାହାଦୁରଙ୍କର ବେଙ୍କରେ ପ୍ରାୟ ଦେଢ଼ ଦୁଇ ଲକ୍ଷ ଟଙ୍କାର ଜାଲ ନୋଟ ମଧ୍ୟ ବାହାରିଛି ।"

"ହୁଁ, ବ୍ଲାକବାର୍ଡ଼ ତେବେ ଆପାଦମସ୍ତକ Black ଦେଖୁଛି ।"

"ଅପ୍ସାରଟା ଖୁବ୍ ଚାଲାକ୍; ତା ସହକାରୀ ସ୍ମିଥ୍ ସାହେବ ମଧ୍ୟ ବେଶ୍ ଉଚ୍ଚଶିକ୍ଷିତ, ଚାଲୁଏଣ୍ଟ । ମୁଁ ଅନେକ ଦିନରୁ ଅପ୍ସାରର ତଥ୍ୟ ତଲ୍ଲାସ କରୁଛି; କିନ୍ତୁ ଏହା ପୂର୍ବେ ସନ୍ଦେହଜନକ କିଛି ପାଇ ନ ଥିଲି । ଏଥର ଅଉ ମୁକ୍ତି ନାହିଁ; କିନ୍ତୁ ସମୟସାପେକ୍ଷ ।"

"ମୋର କିନ୍ତୁ ବିଲାତ ଯିବାକୁ ଆଉ ଦୁଇଟି ମାସ ବାକି—ଆଶାକରେ, ଏ କଥା ସବୁବେଳେ ସ୍ମରଣ ଥିବ ।"

"ହଁ...ପ୍ରାଣପଣେ ଚେଷ୍ଟା କରିବି ।"

—୧୪—

କୁମାର ଧୂର୍ଜ୍ଜଟିପ୍ରସାଦଙ୍କ ଅଜ୍ଞାତରେ ଯିମିତି ତାଙ୍କରି ନାମରେ ଦୁଇଟି ଦଫାରେ ପ୍ରାୟ ଲକ୍ଷାଧିକ ଟଙ୍କା ବେଙ୍କରେ ଜମା ରଖା ହୋଇଥିଲା, ସିମିତି ତାଙ୍କ ଅଜ୍ଞାତରେ ପ୍ରାୟ ସମସ୍ତ ଟଙ୍କା ଉଠାଇ ନିଆଗଲା । ଅବଶିଷ୍ଟ ଯାହା ରହିଲା, ନାମମାତ୍ର ! କୁମାର ସାହେବଙ୍କ ଟଙ୍କା ଜମା ଦେଇଥିବା ଦିନ ଦେଖାଗଲା, ଠିକ୍ ସେହିଦିନ ବାଟଲର ଏବଂ ଜ୍ କମ୍ପାନୀ ମଧ୍ୟ ଅନେକ ଟଙ୍କା ଜମା ଦେଇଛନ୍ତି । ଅନ୍ୟାନ୍ୟ କେତେକ ଲୋକ ଟଙ୍କା ଜମା ଦେଇ ଥିଲେ ସତ; କିନ୍ତୁ ତାହା ଅତି ସାମାନ୍ୟ । ତଦନନ୍ତର ଜଣାଗଲା,ଅନ୍ୟ ଲୋକେ ଦଶଟଙ୍କିଆ ନୋଟ ଏବଂ ସ୍ୱର୍ଣ୍ଣ ଭିନ୍ନ ଅନ୍ୟ କିଛି ଜମା ଦେଇ ନାହାନ୍ତି । ବେଙ୍କରୁ ଟଙ୍କା ନେଇଛନ୍ତି କୁମାର ଧୂର୍ଜ୍ଜଟି ପ୍ରସାଦଙ୍କ ସେକ୍ରେଟେରି । ବଟଲର ଏବଂ ଜ୍ କମ୍ପାନୀଙ୍କ ଅଫିସ ପଦ୍ଧତି ମତେ ରାୟ ବାହାଦୁରଙ୍କ ସମସ୍ତ କାର୍ଯ୍ୟ ଚଳେ । ନ ଚଳିବ କିଆଁ ? ସେ ତ ସବୁ

ବିଷୟରେ ସେମାନଙ୍କଦ୍ୱାରା ଅନୁପ୍ରାଣିତ । କୁମାର ଧୂର୍ଜ୍ଜଟିପ୍ରସାଦଙ୍କ ଜମା ଦେଇଥିବା ନୋଟର ନମ୍ବର ସହ କାଗଜପତ୍ର ମିଳାଇ ଦେଖାଗଲା, ସେଗୁଡ଼ ପ୍ରାୟ ସବୁ ଜ୍ଜ ଏବଂ ବଟଲ୍ଲର କମ୍ପାନୀର । ଉକ୍ତ କମ୍ପାନୀର ଅସଲ ନୋଟଗୁଡ଼ କୁମାର ବାହାଦୁରଙ୍କ ନାମରେ ଜମା କରି କେତେକ ଜାଲ ନୋଟ ଦେଇ ସେମାନଙ୍କ ଟଙ୍କା ପୂରଣ କରାଯାଉଛି ! ଏଥିରେ ଯେ କେସିଆରର ସମ୍ପୂର୍ଣ୍ଣ ହାତ ରହିଛି, ସେଥିରେ ବିନ୍ଦୁମାତ୍ର ସନ୍ଦେହ ନାହିଁ । କେସିଅର ଭୁବନ ବାବୁ ସଙ୍ଗରେ Black Bird Companyର ଅନ୍ତ-ରଙ୍ଗତାର ଖବର ରାୟ ବାହାଦୁରଙ୍କ ଔଷଧରୁ ସ୍ପଷ୍ଟ ଜଣାପଡ଼ଗଲା । ଏବେ କୁମାର ସାହେବଙ୍କ ଟଙ୍କା ଜମା ଦେବା ଓ ଉଠାଇ ନେବାରୁ ଆହୁରି ସୁସ୍ପଷ୍ଟ ପ୍ରକାଶ ପାଇଲା ଯେ, Black Bird Company କେସିଅର ଭୁବନ ବାବୁ ଓ କୁମାର ଧୂର୍ଜ୍ଜଟି ପ୍ରସାଦ ସମସ୍ତେ ଏକ ପଥର ଯାତ୍ରୀ । ରାୟ ବାହାଦୁରଙ୍କ ବିରୁଦ୍ଧରେ ଯେଉଁ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର ଲାଗିଛି, ସେଥିରେ ଯେ ଏମାନେ ପ୍ରଧାନ ଉଦ୍ୟୋକ୍ତା, ସେ ବିଷୟରେ ଅଣୁମାତ୍ର ସନ୍ଦେହ ନାହିଁ । ସୁଦାମ ବାବୁ ନୋଟର ନମ୍ବରଗୁଡ଼ ପକେଟ ବୁକ୍‌ରେ ଲେଖି ନେଇ ଅୟାର ସାହେବଙ୍କ ସଙ୍ଗରେ ଦେଖା କରିବା ପାଇଁ ତାଙ୍କ ଦୋକାନକୁ ଯାଇ ଦେଖନ୍ତି, ପକ୍ଷୀ ଉଡ଼ ଯାଇଛି—ଶୂନ୍ୟ ପିଞ୍ଜରା ପଡ଼ ରହିଛି । ଜନମାନବ କେହି କୌଣସି ଆଉ ନାହାନ୍ତି । ପଛପଟ ଦେଇ ଗୋଦାମ ଘରକୁ ଯାଇ ଦେଖନ୍ତି—୪।୫ ଜଣ ଲୋକ କଣସବୁ ବାକ୍ସ ବନ୍ଦ କରୁଛନ୍ତି ।

ସୁଦାମ ବାବୁ ପଚାରିଲେ, "ଅୟାର ସାହେବ କାହାନ୍ତି ।?"

ସେଥିମଧ୍ୟରୁ ଜଣେ ଜବାବ ଦେଲା, "ସେ...ଗସ୍ତକୁ ଯାଇ-ଅଛନ୍ତି ।"

"ଫେରିବେ କେବେ ?"

"ଜଣା ନାହିଁ, ସମ୍ଭବତଃ ୨।୩ ଦିନରେ ଫେରିପାରନ୍ତି ।"

ନିରାଶ ହୋଇ ସୁଦାମ ବାବୁ ଧାଇଁଲେ କୁମାର ସାହେବଙ୍କ ବସାକୁ, ଯଦି ସେଠାରେ କିଛି ନୂତନ ଅନ୍ୱେଷ ମିଳେ । କୌଣସି ଜାହାଜ ତ ରେଙ୍ଗୁନ ଛାଡ଼ ଯାଇ ନାହିଁ । ଯିବ କାହିଁ ? ମଣିପୁର ହୋଇ ଯିବ ? ବାଟରେ

ତ ଲୋକ ରହୁଚନ୍ତି । ତେବେ ଏ ଷଡ଼ଯନ୍ତ୍ରକାରୀର ଦଳ କଣ ପବନରେ ମିଶିଗଲେ ? କୁମାର ସାହେବଙ୍କ ବସାରେ ଦରଜୁଆନ୍ ପୂର୍ବ ପରି ପହରା ଦେଉଛି । ସୁଦାମ ବାବୁ ଛଦ୍ମବେଶରେ ଯାଇ ପଚାରିଲେ, "କୁମାର ସାହେବ କାହିଁ ?"

ଦରଜୁଆନ୍ ଆପାଦମସ୍ତକ ନିରୀକ୍ଷଣ କରି କହିଲା, "ସେ ନାହାନ୍ତି ।"

"ନାହାନ୍ତି ମୁଁ ଜାଣେ; କିନ୍ତୁ ଗଲେ କାହିଁ ?"

"ମୁଁ ଜାଣିବି କିପରି ?"

"କେତେବେଳେ ସେ ବାହାରିଛନ୍ତି ?"

"ଗତ ବୁଧବାର ଦିନ ୫ଟା ବେଳେ ।"

"ଅଦ୍ୟାପି ଫେରି ନାହାନ୍ତି ?"

"ନା"

"ବସାରେ ଆଉ କିଏ ଅଛି ?"

"କେହି ନାହାନ୍ତି ।"

"ଚାକରବାକର ?

"ମୋ ଛଡ଼ା ଆଉ କେହି ନାହାନ୍ତି ।"

"ଓ, ଆଚ୍ଛା ଚାଲ, ମୁଁ ଥରେ ଉପରକୁ ଯିବି ।"

"ମାଲିକ ନ ଆସିଲେ କାହାରିକି ଯିବାକୁ ଦେବି ନାହିଁ ।"

"ଜେଲକୁ ଯିବା ପାଇଁ ବଡ଼ ସାଧ ହେଉଛି, ନା ? ଜାଣୁ ମୁଁ ପୋଲିସର ଲୋକ ?"

ପୋଲିସର ନାମ ଶୁଣି ଦରୁଆନ ସ୍ତମ୍ଭୀଭୂତ ହୋଇଗଲା । କଣ କରିବ ଏବେ ସେ ? କେହି ନାହାନ୍ତି, କାହାଠାରୁ ବା ପରାମର୍ଶ ନେବ ? ଯଦି ଉପରକୁ ନେଇଯାଏ, ମାଲିକ ଶୁଣିଲେ ଚାକିରି ଯାଇପାରେ; ନ ନେଲେ ପୋଲିସର ଲୋକ, ବିଶ୍ୱାସ କଣ ? ହୁଏ ତ ଏହିକ୍ଷଣି ହାତକଡ଼ା ଦେଇ ଟାଣି ଓଟାରି ନେଇଯିବ । କଣ କରିବ ଏବେ ସେ ?

ସୁଦାମ ବାବୁ ଧମକ ଦେଇ କହିଲେ, "କଣ ଗେଟ ଖୋଲିବୁ, ନା ଦୁଇ ଚାରିଜଣ କନେଷ୍ଟବଲ ଡକାଇବି ?"

ଦରୁଆନ ମୁଣ୍ଡ ଆଉଁଷି କହିଲା, "ହଜୁର ଚାଲନ୍ତୁ କିନ୍ତୁ ମୋ ଚାକିରି—।"

"ଭୟ ନାହିଁ, ମୁଁ ଅଛି—।"

ଉପରକୁ ଉଠି ଦେଖିଲେ, ଘରଦ୍ୱାର ପୂର୍ବ ପରି ପଡ଼ିରହିଛି । ଗୋଟିଏ ଦୁଇଟି ତିନିଟି କରି ପ୍ରତ୍ୟେକ କୋଠରୀ ସୁଦାମ ବାବୁ ତନ୍ନ ତନ୍ନ କରି ପରୀକ୍ଷା କଲେ; କିନ୍ତୁ କୌଣସିଠାରେ କିଛି ସନ୍ଦେହଜନକ ପାଇଲେ ନାହିଁ । ବୁଝିବାକୁ ତାଙ୍କୁ ବାକି ରହିଲା ନାହିଁ ଯେ, ରେଙ୍ଗୁନ ଛାଡ଼ି ଆସ୍ୱାର ସାହେବ ସଦଳବଳରେ ପଳାଇଯାଇଛନ୍ତି । କିନ୍ତୁ କାହିଁ ଯିବେ ? ଆଜି ହେଉ, କାଲି ହେଉ, ଭେଟ ମିଳିବ ନିଶ୍ଚୟ । ସୁଦାମ ବାବୁ ସହଜରେ ଛାଡ଼ିବାର ପାତ୍ର ନୁହନ୍ତି । ତତ୍କ୍ଷଣାତ୍ କଲିକତା ଯିବାପାଇଁ ମନ ସ୍ଥିର କରି ଶମ୍ଭୁନାଥ ସଙ୍ଗରେ ଦେଖା କରିବାକୁ ଗଲେ ବସୁ ବାହାଦୁରଙ୍କ ଘରକୁ । ଦରଜା ପାଖକୁ ଯାଇ ଦୁଇ ତିନି ଥର ସାଙ୍କେତିକ ଶବ୍ଦ କରିବା ମାତ୍ରକେ ଶମ୍ଭୁନାଥ ବାହାରି ଆସିଲା । ପଛଆଡ଼କୁ ଯାଇ ସେ ପଚାରିଲେ, "ଭୁବନ କାହିଁ ?"

"ଏଇ ମାତ୍ର କେଉଁଆଡ଼େ ବାହାରିଗଲା ।"

"ନୂତନ ଖବର ?"

"କିଛି ନାହିଁ—ତେବେ ଦୁଇ ତିନି ଦିନ ହେଲା ସବୁବେଳେ ସେ ବାହାରକୁ ଯାଉଛି ; ଜମା ଆଉ ବସାରେ ରହୁ ନାହିଁ । କାଲି ସନ୍ଧ୍ୟାରେ ତା ପିଛା ଧରିଥିଲି । ମାର୍କେଟ ଷ୍ଟ୍ରିଟ୍ ହୋଇ ବରାବର ଗଲା ସେ ସାର-କୁଲାର ରୋଡ଼କୁ । ଗୋଟିଏ ଛୋଟିଆ ଘରର ଦୁଆରେ ଯାଇ ତିନି ଥର ଶବ୍ଦ କରିବା ମାତ୍ରକେ ଭିତରୁ ଜଣେ ବାହାରିପଡ଼ିଲା । ଦୂରରୁ ଦେଖିଛି ସତ; କିନ୍ତୁ ସେ ଛଦ୍ମବେଶୀ ଆସ୍ୱାର ଛଡ଼ା ଆଉ କେହି ନୁହେଁ । ସେମାନେ ଭିତରେ ପଶି କବାଟ ବନ୍ଦ କରିବାରୁ କଥାଭାଷା କିଛି ଶୁଣିପାରିଲି ନାହିଁ । ତେବେ ବାହାରିବା ବେଳେ ଜାଣିଛି, ଆଜି ହେଉ ବା କାଲି ହେଉ, ସେମାନେ ରେଙ୍ଗୁନ ଛାଡ଼ି ଅତିଶୀଘ୍ର ପଳାଇଯିବେ ।"

"ପଳାଇଯିବେ କେଉଁଆଡ଼େ ? କାଲି ଗୋଟିଏ ଜାହାଜ ଛାଡ଼ିବ, ମୁଁ ସେଥିରେ ସମ୍ଭବ କଲିକତା ଯିବି—ସବୁ ବନ୍ଦୋବସ୍ତ କରି ରଖିଛି । ଯଦି ମଣିପୁର ବାଟେ ଯାନ୍ତି, ସେଥିପାଇଁ ପୋଲିସ୍ କମିସନର କାଳେ ଜଗି ବସିଛନ୍ତି । ମୋ ଆଖିରେ ସହଜରେ ଧୂଳି ଦେଇପାରିବେ ନାହିଁ । ଘର ଠିକଣାରେ ତାର ଦେବି । ଯଦି କଲିକତାର ଠିକଣା ଜଣାପଡ଼େ, ତୁରନ୍ତ ସାଙ୍କେତିକ

ତାର କଷ୍ଟ ଜଣାଇଦେବ । ତମେ କେବଳ ଲକ୍ଷ୍ୟ ରଖିଥିବ, ଯହିଁରେ ଜୀବନ ପଳାଇ ନ ପାରେ କିମ୍ବା ଆଉ ରାୟ ବାହାଦୁରଙ୍କୁ ସେହି ବିଷ ବଟିକା ପ୍ରୟୋଗ କରି ନ ପାରେ ।"

"ବଟିକା ତ ନାହିଁ, ତେବେ ଆୟାର ସାହେବ ପଠାଇ ଦେବ କହୁଛି ।"

"ପଠାଇବା ମାତ୍ରକେ ସେଗୁଡ଼ା ଯେ କୌଣସି ମତେ ନଷ୍ଟ କରି ଦେବ । ରାୟ ବାହାଦୁର କିମିତି ?"

"ବୁଢ଼ା ଭଲ ଅଛନ୍ତି ସେ; କିନ୍ତୁ ବଡ଼ ବେଶି କାତର ହୋଇ-ପଡ଼ିଲେଣି ।"

"ହେବାର ହିଁ କଥା ଶମ୍ଭୁ ! ତାଙ୍କୁ କହିବ, ଅଳ୍ପଦିନ ମଧ୍ୟରେ ତାଙ୍କ କନ୍ୟାକୁ ମୁଁ ନିଶ୍ଚୟ ଫେରାଇ ଆଣି ଦେବି ।"

—୧୭—

କୁମାର ଧୂର୍ଜଟିପ୍ରସାଦଙ୍କ ପରିତ୍ୟକ୍ତ ଦରଜଆନ୍ ଗଙ୍ଗାରାମକୁ ହାତ କରିବାକୁ ସୁଦାମ ବାବୁଙ୍କୁ ବିନ୍ଦୁମାତ୍ର ଡେରି ହେଲା ନାହିଁ । ତାଙ୍କ ପରିଚୟ ପାଇ ବିଚାରା ଗୋଡ଼ତଳେ ପଡ଼ି କାନ୍ଦିବାକୁ ଲାଗିଲା । ସୁଦାମ ବାବୁ ତାକୁ ଆଶ୍ୱାସନା ଦେଲେ—ସେ ଯଦି ତାଙ୍କ କଥାମତେ ଚଳେ, ତେବେ ତାର କୌଣସି ବିପଦ ଘଟିବ ନାହିଁ । ଯାହା ବେତନ ପାଉଥିଲା, ତାହା ହିଁ ପାଇବ ସେ; ଅଧିକନ୍ତୁ ଖାଇବା ପିଇବା ଖରଚ ସୁଦାମ ବାବୁ ନିଜେ ଦେବେ । କାମ ହାସଲ କଲେ ବକସିସ୍‌ର ମଧ୍ୟ ଆଶା ଅଛି । ତେବେ ଯଦି ସେ କୌଣସି ମତେ ପ୍ରତାରଣା କରେ, କି କୌଣସି କଥା କାହାରିଠାରେ ପ୍ରକାଶ କରେ, ତେବେ ତତ୍‌କ୍ଷଣାତ୍ ତାକୁ ପୋଲିସ୍ ହାତରେ ଧରାଇ ଦେବେ । ତାଙ୍କ ଦୃଷ୍ଟି ଏଡ଼ି ପଳାଇବା ବା ଲୁଚି ରହିବା ଯେ ସମ୍ପୂର୍ଣ୍ଣ ଅସମ୍ଭବ, ତାହା ମଧ୍ୟ ବିଶଦ ଭାବରେ ବୁଝାଇଦେଲେ । ଗଙ୍ଗାରାମ ବିଚାରା ଅସ୍ୱୀକାର କରିବାକୁ ଜମା ବାଟ ପାଇଲା ନାହିଁ । ଏଣ୍ଡ୍ରୋରସନ ଜାହାଜଟି ରେଙ୍ଗୁନ ଛାଡ଼ିବା ଦିନ ସୁଦାମ ବାବୁ ଗଙ୍ଗାରାମକୁ ବୃଦ୍ଧ ବୌଦ୍ଧ ଭିକ୍ଷୁକ ବେଶରେ ସଜାଇ କହିଲେ, "ତୁ ଅନ୍ଧ କାଲା, ସବୁବେଳେ ଏହା ମନେ ରଖିଥିବୁ । ଏହିକ୍ଷଣି ତୋତେ

ମୋ ସଙ୍ଗରେ କଲିକତା ଯିବାକୁ ପଡ଼ିବ, ବୁଝିଲୁ ? ତୁ ଯେ ମୋତେ ଚିହ୍ନୁ-ବା ଜାଣୁ, ତାହା ଇଙ୍ଗିତରେ ମଧ୍ୟ କେବେ ପ୍ରକାଶ କରିବୁ ନାହିଁ । ସମସ୍ତ ବନ୍ଦୋବସ୍ତ କରିବି ମୁଁ; ତୁ କେବଳ ଚୁପ ହୋଇ ବସିଥିବୁ । ଯଦି ତୋ କୁମାର ସାହେବ, କି ତାଙ୍କ ସେକ୍ରେଟେରୀ, କାହାରିକି ଦେଖୁ, ପାଖକୁ ଗଲାବେଳେ କେବଳ ହାତ ଉଠାଇ ନମସ୍କାର କରିବୁ । ତାପରେ ମୁଁ ସବୁ ବନ୍ଦୋବସ୍ତ କରିବି, ବୁଝିଲୁ ? ସମ୍ଭବତଃ ସେମାନେ ଅମର ପରି ଛଦ୍ମ-ବେଶରେ ହିଁ ଥିବେ ।”

“କୁମାର ସାହେବ ଛଦ୍ମବେଶରେ ଥିଲେ ମଧ୍ୟ ଚିହ୍ନିବା କଠିନ ହେବ ନାହିଁ । ଆଉ ସେକ୍ରେଟେରୀ ସାହେବ ତାଙ୍କ ବାଁ ଗୋଡ଼ଟା ଲୁଚାଇ ପାରିବେ କିପରି ? ତାଙ୍କର ସେ ଗୋଡ଼ଟି ଟିକେ ଯେ ସାନ !”

“ବେଶ—ବେଶ, ଦୁଇ ଜଣଙ୍କ ମଧ୍ୟରୁ ଯାହାକୁ ହେଉ, ପାଇଲେ ଆମ କାମ ହାସଲ ହେବ; କିନ୍ତୁ ସାବଧାନ, କୌଣସିମତେ ମୋ କଥା ସେମାନଙ୍କୁ କହିବୁ ନାହିଁ । ଅବହେଳା କଲେ ଜେଲରେ ପଚି ମରିବାକୁ ହେବ ।”

“ସେ କଥା ଆଉ ଥରଥର କରି କହିବାକୁ ହେବ, ହଜୁର ?”

ଏଣ୍ଡ୍ରାରସନ ଜାହାଜ ଛାଡ଼ିବା ମାତ୍ରକେ ଛଦ୍ମବେଶୀ ସୁଦାମ ବାବୁ ଚାରିଆଡ଼େ ଥରେ ଦୃଷ୍ଟି ବୁଲାଇନେଲେ, ଯଦି ସେଠାରେ ହଠାତ୍ କାହାରିକି ଦେଖି ପାରନ୍ତି; କିନ୍ତୁ ନାହିଁ, କାହିଁ କେହି ନାହିଁ ।

ଦିନଯାକ ଇଆଡ଼େ ସେଆଡ଼େ ବୁଲି ବୁଲି କାହାରି ଭେଟ ପାଇବା ପଛକୁ ଥାଉ, ସନ୍ଦେହ କରିବା ଭଳି ମଧ୍ୟ କେହି ଆଖିରେ ପଡ଼ିଲେ ନାହିଁ । ଛଦ୍ମବେଶୀ ସୁଦାମ ବାବୁ ସନ୍ନ୍ୟାସୀ ଲୋକ, ତାଙ୍କ ପାଇଁ ଟିକଏ ଅଲଗା ଆଇନ ! ସୁତରାଂ ଇଆଡ଼େ ସେଆଡ଼େ ବୁଲାବୁଲି କରିବାକୁ ଜମା ବାଧାବିଘ୍ନ ନାହିଁ; କିନ୍ତୁ ବୁଲି ମାତ୍ର ସାର ସିନା—ଦିନଯାକ ବୁଲାବୁଲି କ୍ଳାନ୍ତ ହୋଇ ପଡ଼ିଲେ । କାହିଁ କିଛି ପାଇଲେ ନାହିଁ । ନିରାଶ ହେବା ବ୍ୟତୀତ ନୂତନ କିନ୍ତୁ ସେ ! ଦେଖାଯାଉ, କଲିକତା ପହଞ୍ଚି କିମିତି ଦେଖାଯିବ, କିମିତି କରାଯିବ ?

ରାତି ପ୍ରାୟ ୧୨ଟା—ଜ୍ୟୋତ୍ସ୍ନାଲୋକିତ, ଝୁଲୁଝୁଲିଆ ପବନ ବହୁଛି । ନାଚି ନାଚି ଦୋହଲି ଦୋହଲି ଚାଲିଛି—ବିରାଟକାୟ ‘ଏଣ୍ଡ୍ରାରସନ’

ଜାହାଜଟି ସମୁଦ୍ର-ବକ୍ଷରେ । ଅଧିକାଂଶ ଯାତ୍ରୀ ନିଦ୍ରାକୋଳରେ—କର୍ମଚାରୀ ସୁଦାମ ବାବୁଙ୍କ ଆଖିରେ ନିଦ ନାହିଁ ! ଅହରହ ତାଙ୍କ ମନରେ ଗୋଟାଏ ଭୀଷଣ ଚିନ୍ତା—କିମିତି କରି ଚଞ୍ଚଳ ପ୍ରମୀଳାକୁ ଫେରାଇ ଆଣି ଦେବେ । କୁଞ୍ଜ ରାୟ ବାହାଦୁର ଯେ ତାଙ୍କର ଉପରେ ନିର୍ଭର କରି ରହିଛନ୍ତି । ସେ ଅକୃତକାର୍ଯ୍ୟ ହେଲେ ହୁଏ ତ ହାଟଫେଲ କରିବ ତାଙ୍କର । ଜୀବନସର୍ବସ୍ୱ ଏକମାତ୍ର ଆଦରିଣୀ କନ୍ୟା ପ୍ରମୀଳା ହିଁ ଯେ ତାଙ୍କ ଇହ-କାଳ ପରକାଳ ! କଣ କରିବେ,କିମିତି କରି ତାର ଉଦ୍ଧାର ସାଧନ ହେବ, ଭାବି ଭାବି ସୁଦାମ ବାବୁଙ୍କ ମୁଣ୍ଡ ଗରମ ହୋଇଗଲା । ସେ ଶଯ୍ୟା ଛାଡ଼ି ଡେକ୍‌ରେ ଯାଇ ଛିଡ଼ା ହେଲେ । ହଠାତ୍ ଗୋଟାଏ ଆର୍ତ୍ତନାଦ ଭଳିଆ ଶବ୍ଦ ଶୁଣି ସ୍ୱର ଲକ୍ଷ୍ୟ କରି ପ୍ରଥମ ଶ୍ରେଣୀ ଆଡ଼କୁ ଯାଇ ଗୋଟିଏ 'କେବିନ' ପାଖରେ ଛିଡ଼ା ହୋଇ ରହିଲେ । ଭିତରୁ ପୁଣି ସେହି ଆର୍ତ୍ତନାଦ, ବଡ଼ ଚଞ୍ଚଳ ହୋଇ ଉଠିଲେ ସେ । ଗୃହପଟର ଦୁଆର ଝରକା ସବୁ ବନ୍ଦ । ଭିତରେ କଣ ହେଉଛି, ଦେଖିବାର ଉପାୟ ନାହିଁ । ଝରକା ପାଖରେ ଯାଇ ଛିଡ଼ା ହେଲେ, ଯଦି କବାଟର ଫାଙ୍କ ଦେଇ କିଛି ଦେଖାଯାଏ । କିନ୍ତୁ ବୃଥା ଆଶା ! କାନ ଡେରି ଛିଡ଼ା ହେଲେ—ନାରୀର କଣ୍ଠସ୍ୱର .....

"ମୋ ସଙ୍ଗରେ ଲାଗ ନାହିଁ, ମୁଁ ଆଉ ସହି ପାରୁ ନାହିଁ ଯେ,କେତେ ଫୋପଡ଼ିବ ମୋତେ, ଏକାବେଳକେ ମାରି ଦିଅନା ।"

କର୍କଶ ପୁରୁଷ କଣ୍ଠରେ କିଏ କହିଉଠିଲା, "ହୁଁ, ତୋତେ ମାରିବୁ ବୋଲି ଏତେ କଷ୍ଟ କରି କଲିକତା ନେଇ ଯାଉଛୁ ନା ।"

"କିଏ ତମେ, କାହିଁକି ମୋତେ ନେଇ ଯାଉଛ ? ଛାଡ଼ିଦିଅ, ମୁଁ ମୋର ଘରକୁ ଯିବି ।"

"ମୁଁ କିଏ, ତୁ ଯଦି ଚିହ୍ନିପାରୁ, ତେବେ ଆଉ ଭାବନା ଥିଲା କଣ ? ନେ, ନେ ଚଞ୍ଚଳ ଖାଇ ନେ; ନ ହେଲେ ଆଜି ଅନ୍ନ ଖାଇପାରିବୁ ନାହିଁ ଯେ ।"

"ନା, ନା, ମୁଁ ଖାଇବି ନାହିଁ, ସତ କହ, ତମେ କିଏ ?"

"ଅରେ ଖା ପାଗଳି, ଦିନରାତି କେଁ, କେଁ ଭଲ ଲାଗେ ନାହିଁ । ଖା, ନ ହେଲେ ଆପେ ଦୁଃଖ ପାଇ ମରିବୁ । ନ ଖାଇଲେ ଅନ୍ତର ବେଦନା

ହେବ, ଅନ୍ଧାର ଜଙ୍ଗଲ—ସମ୍ଭାଳ ରକ୍ଷଣାବେକ୍ଷଣ ନାହିଁ । ବୁଧଡକ ପିଇ ଦେ ଶୁନା ଝିଅ ପରି । ଦେ, ଖା, ନ ହେଲେ ଜୋର କରି ଏହି ନଳଟା ତଣ୍ଟିରେ ପୂରାଇ ପିଆଇଦେବି—ନେ, ସଅଳ ସଅଳ ଖାଇ ନେ ।”

ନାରୀକଣ୍ଠର ଜଡ଼ିତ ସ୍ୱରର କଥାଗୁଡ଼ା କ୍ରମେ କ୍ରମେ ଅସ୍ପଷ୍ଟ ହୋଇ-ପଡ଼ିଲା । ଦ୍ୱାର ଖୋଲିବା ଶବ୍ଦ ପାଇ ସୁଦାମ ବାବୁ ଅନ୍ୟଆଡ଼େ ଘୁଞ୍ଚି ଯାଉଁ ଯାଉଁ ଭାବିଲେ, ଏଥି ଭିତରରେ କିଛି ରହସ୍ୟ ଅଛି; କାଲି ଥରେ ଚେଷ୍ଟା କରି ଦେଖାଯିବ, ଯଦି କିଛି ମିଳେ ।

‘ସାରେଙ୍ଗ’ଠାରୁ ଶୁଣିଲେ ସେ ‘କେବିନ’ରେ ଜଣେ ମୁସଲମାନ ବଡ଼ ଲୋକ ତାଙ୍କ କନ୍ୟାର ଚିକିତ୍ସା ପାଇଁ ସସ୍ତ୍ରୀକ କଲିକତା ଯାଉଛନ୍ତି । ବଡ଼ ଦିଲଦରିଆ ମଣିଷ ସେ ।

ପରଦିନ ପ୍ରାତଃକୃତ୍ୟ ଶେଷ କରି ସୁଦାମ ବାବୁ ସେହି କେବିନ ଦୁଆରେ ଯାଇ ଠିଆହେଲେ । ଭିତରୁ ବୁଢ଼ା ଖାନସମା ବାହାରି ପଚାରିଲା, “ଏଠି ତମର ପ୍ରୟୋଜନ ?”

“ସାହେବଙ୍କ ସଙ୍ଗରେ ଟିକେ ଦେଖା କରିବି ।”

“କାହିଁକି ?”

“ଏତା କଥା ଦିଥର କହି ଲାଭ କଣ ? ସାହେବଙ୍କୁ କହିଲାବେଳେ ଶୁଣିବ । ଦୟା କରି ତମେ ସାହେବଙ୍କୁ ଖବର ଦିଅ ଥରେ । ଭାଇ, ସାଧୁ ସନ୍ନ୍ୟାସୀ ଲୋକ ଆମେ, ପରର ଉପକାର କରିବା ହିଁ ଆମର ଧର୍ମ ।”

“ଅଚ୍ଛା, ଭିତରକୁ ଆସିପାର । ସାହେବ ଅସୁସ୍ଥ; ସେ ବାହାରକୁ ଆସିପାରିବେ ନାହିଁ ।”

“ଭଲ” କହି ସୁଦାମ ବାବୁ ଭିତରକୁ ଯାଇ କହିଲେ—

“ବିଶ୍ୱମାତା ତମର କଲ୍ୟାଣ କରନ୍ତୁ—ସାହେବ ! ମୁଁ କାଲି ରାତିରେ ଆପଣଙ୍କର ଏଠି ଗୋଲମାଳ ଶୁଣି ଧାଇଁ ଆସିଥିଲି; କିନ୍ତୁ କବାଟ ବନ୍ଦ ଦେଖି ଫେରିଗଲି । ମୋର ମନେ ହେଲା, କିଏ ଯେପରି ବଡ଼ ଦୁଃଖରେ ବାରି ବାର ଆର୍ତ୍ତନାଦ କରିଉଠୁଥିଲା । ଆମ ଧର୍ମ ଲୋକସେବା । ଯଦି ମୋ ଦ୍ୱାରା ଆପଣଙ୍କର କିଛି ଉପକାର---—”

"ଆପଣ ଭଲ କରିବେ । ମୋର ଦୁର୍ଭାଗ୍ୟର ସୀମା ନାହିଁ । ମୁଁ ତ ଜଣେ ବାତରୋଗୀ, ଛମାସ ହେଲା ଭଲ କରି ଉଠିବସି ପାରୁ ନାହିଁ । ଏବେ ସାମାନ୍ୟ ଚଳାଚଳ କରିପାରିଲେ ମଧ୍ୟ ଅଣ୍ଟାରେ ଭୀଷଣ ଯନ୍ତ୍ରଣା ଅନୁଭବ କରେ ।"

"ମୋ ପାଇଁ ମୋର ଭାବନା ନାହିଁ । ଆଲ୍ଲାଙ୍କ ପାଖକୁ ଯିବାର ସମୟ ହେଲାଣି ମୋର; କିନ୍ତୁ ମୋର କନ୍ୟାଟି ପ୍ରାୟ ଦେଢ଼ ବର୍ଷ ହେଲା ଉନ୍ମାଦ ରୋଗରେ ଆକ୍ରାନ୍ତ । ସମସ୍ତ ଦିନମାନ ପ୍ରାୟ ଅଜ୍ଞାନ ହୋଇ ପଡ଼ିଥାଏ ସେ । ଲୁଗାପଟା ମଧ୍ୟ ଦେହରେ ଜମା ରଖେ ନାହିଁ; ତେଣୁ "ବୋରଖା"ଟିଏ ଆପାଦମସ୍ତକ ଘୋଡ଼ାଇ ରଖିଛୁ । ଯଦିବା କେତେ-ବେଳେ ଦଣ୍ଡେ ଘଡ଼ିଏ ପାଇଁ ସଜାଗ ହୋଇଉଠେ, ତେବେ ଅସଂଲଗ୍ନ କେତେଗୁଡ଼ାଏ ପ୍ରଳାପ ବକିବ, ନ ହେଲେ ଭୀଷଣ ଯନ୍ତ୍ରଣା ହେଲାଭଳି ଆର୍ତ୍ତନାଦ କରିଉଠିବ । ମୁଁ ଏହାର ଚିକିତ୍ସା ପାଇଁ କଲିକତା ଯାଉଛି ।"

"ଅଚ୍ଛା, ଜ୍ଞାନ ହେଲାବେଳେ ଦୟାକରି ମୋତେ ଟିକିଏ ଖବର ଦେବେ ? ମୁଁ ଥରେ ଚେଷ୍ଟା କରି ଦେଖିବି, ମା'ଙ୍କ କୃପା ହେଲେ ଯିମିତି ଉନ୍ମାଦ ହେଉନା କାହିଁକି, ତିନି ଚାରି ଦିନରେ ନିଶ୍ଚୟ ଭଲ ହୋଇଯିବ ।"

"ଆହା, ତା ହେଲେ ତ ମୁଁ ବଞ୍ଚିଯିବି ସାଧୁଜୀ । ଚିରଦିନ ଆପଣଙ୍କ କିଣା ହୋଇ ରହିବି । ମୁଁ ନିଶ୍ଚୟ ଆପଣଙ୍କୁ ଖବର ଦେବି । ଆପଣ କେଉଁ ଶ୍ରେଣୀରେ ?"

"ସାଧୁସନ୍ନ୍ୟାସୀ ଲୋକ, ତୃତୀୟ ଶ୍ରେଣୀ ଛଡ଼ା ଆଉ ଆମର ଦରକାର କଣ ?"

"ବେଶ୍ ଖାନସମା ଯାଅ ତ ସାଧୁଙ୍କର 'ସିଟ୍'ଟି ଦେଖି ଆସ । ରାତିରେ ତମକୁ ହିଁ ତ ଯିବାକୁ ପଡ଼ିବ ।"

ସନ୍ନ୍ୟାସୀଙ୍କୁ ଛାଡ଼ିଆସି ଖାନସାମା କହିଲା, "ସନ୍ଦେହଜନକ, ଏଠା ରାତି ବାରଟା, ଗୋଟାଏ ବେଳେ ନ ଶୋଇ ଇଆଡ଼ ଆସି ମରୁଥିଲା କିଅଁ ? ଆଜି ମୁଁ ତାକୁ ଠିକ୍ ଏଠାକୁ ନେଇଆସିବି, ଯଦି ବୁଝାପଡ଼େ—ସମୁଦ୍ରରେ କୁମ୍ଭୀର ମଗରର ବେଶ ଗୋଟାଏ ଭୋଜି ହେବ । କିନ୍ତୁ ସନ୍ଧ୍ୟା ହେଉଁ ହେଉଁ ବୋରଖା ବଦଳ କରି ରଖିବାକୁ ପଡ଼ିବ ।"

"କିଆଁ ?"

"ଠିକ୍, ଏଠାର ତ ଶେଷ ଦେବ ଗୋଟାଏ କ ଦେଢ଼ ଟା ଘଡରେ । ତା ପୂର୍ବେ ସାଧୁକୁ ଅଭିନୟ ଦେଖାଇବାକୁ ପଡିବ ନା ? ଏଥର ବୋଉଖା ବଦଳାଇ ପିନ୍ଧାଇ ନ ଥିଲେ ଅଭିନୟରେ ଯେଉଁ ଭୀଷଣ ତ୍ରୁଟି ରହିବ, ସେଥିରେ ହିଁ ସର୍ବନାଶ । ଲୋକଟାର ଢଙ୍ଗରଙ୍ଗ ବଡ଼ ସୁବିଧା-ଜନକ ବୋଲି ମନେ ହେଉ ନାହିଁ । ଜଣକୁ ତ ପାଗଳ କରିବେ; କିନ୍ତୁ ଆଉ ଜଣକୁ ?"

"ଆରେ ଉଡାଗର ରହି ରହି ଶୋଇ ପଡ଼ିବେ ନାହିଁ—ବୁଢ଼ା ଲୋକ ବାନ୍ଧ ଛାଡି କ୍ଲାନ୍ତ ଶ୍ରାନ୍ତ ।"

"ଉଃ । ବଡ଼ ମଜା ଲୋକ ଅପଣ ତ ।"

"ନ ହେଲେ ଗୋଖର ନେଇ ଖେଳ ଖେଳୁଛୁ ଜାଣ ନାହୁ ମୁଁ, ଚେଙ୍ଗୁନରେ ଅଳଯାଏ......ସୁଦାମ ରହିଛୁ ଅଛ ।



୧୭

ଛଦ୍ମବେଶ ଧରିବାକୁ ସୁଦାମ ବାବୁ ଜଣେ ସିଦ୍ଧହସ୍ତ ହେଲେ ମଧ୍ୟ ମୁସଲମାନ୍ ପରିବାରର କମିତ ଗୋଟାଏ ଅଜଣା ଅତଙ୍କ ତାଙ୍କ ଉପରେ ଅସି ପଡିଥିଲା । ସେମାନେ ପ୍ରାଣପଣ ସାବଧାନ ହୋଇ କାମ କଲେ ବୁଢ଼ା ସନ୍ନ୍ୟାସିବେଶୀ ସୁଦାମ ବାବୁଙ୍କ ମନରୁ ଗୋଟାଏ "କିନ୍ତୁ" କୌଣସି ମତେ ଉଠିଲା ନାହିଁ । ସନ୍ଦେହଜନକ କିଛି ସେ ପାଇ ନାହାନ୍ତି ସତ, ତଥାପି ମନେ ହୁଏ—ହୁଏ ତ ଏଥିରେ କିଛି ଗୋପନ ରହସ୍ୟ ରହି-ଯାଇଛି । ସନ୍ଦେହ ତାଙ୍କର ଆହୁରି ଦୃଢ଼ରୁ ଦୃଢ଼ତର ହେଲା । ରୁଗ୍ଣାର ହାତ ଦେଖି—ସେ ହାତ ସୁକୋମଳ, ସୁନ୍ଦର ହେଲେ ମଧ୍ୟ ନାରୀଜନୋ-ଚିତ ସୁଗୋଲ ନୁହେ । × × × ପୁରୁଷ ପରି ଟିକିଏ ଚେପ୍ଟା, ଟିକିଏ ଲୋମଶ । ସୁଦାମ ବାବୁଙ୍କ ଆଖି ସବୁବେଳେ ତାଙ୍କ ପଛରେ ଲାଗି ରହିଲା । 'ପ୍ରିନ୍‌ସେପ' ଘାଟରେ ଅସି ଜାହାଜ ଉଠିବା ମାତ୍ରକେ ମୁସଲମାନ

ପରିବାର ଓହ୍ଲାଇ ପଡ଼ିଲେ । ସୁଦାମ ବାବୁ ଗଲେ ଟଙ୍ଗାକୁ ନେଇ ଟିକେ ତଫାତ୍‌କୁ, ଗୋଟିଏ ଟେକ୍‌ସି ବନ୍ଦୋବସ୍ତ କରିବା ପାଇଁ । ଘଣ୍ଟା ହିସାବରେ ଟେକ୍‌ସି ବନ୍ଦୋବସ୍ତ ହେଲା । ପର୍ଦ୍ଦା ଲଗାଇ ସୁଦାମ ବାବୁ ବେଶ-ପରିବର୍ତ୍ତନ କଲେ ।ସଙ୍ଗେ ସଙ୍ଗେ ବୌଦ୍ଧ ଭିକ୍ଷୁକ ଟଙ୍ଗା ଚଳାମେନ ସାଙ୍ଗ ଡ୍ରାଇଭର ପାଖରେ ଯାଇ ବସିପଡ଼ିଲେ । ମୁସଲମାନ ପରିବାରର ବାକ୍‌ସ ପେଟରା ଟ୍ରାକରେ ବୋଝାଇ କରି ଗାଡ଼ି ଚାଲିଲା; ପଛରେ ଧାଇଁଲେ ସୁଦାମ ବାବୁ ।

—ନଂ---ମିର୍ଜାପୁର ଷ୍ଟ୍ରିଟ୍‌ରେ ଗାଡ଼ି ଠିଆହେଲା । ମାଲପତ୍ର ଓହ୍ଲାଇବା ଅଗରୁ ମୁସଲମାନ ପରିବାର ଗୃହରେ ପ୍ରବେଶ କଲେ । କ୍ଳାନ୍ତ ଶ୍ରାନ୍ତ ସୁଦାମ ବାବୁ ପକେଟ-ବୁକ୍‌ରେ ଘରର ନମ୍ବର ଟିପିନେଇ ଚାଲିଗଲେ ନିଜ ଗନ୍ତବ୍ୟ ସ୍ଥାନକୁ । କଲିକତା ସହକାରୀ ପୋଲିସ କମିସନର---ମୃଣାଳ ବାବୁ ତାଙ୍କର ଅତି ବେଶି ପରିଚିତ ବନ୍ଧୁ । ଦୁର୍ଦ୍ଦୈବାତ୍ ଏକ ପଥର ପଥିକ; ଅଧିକନ୍ତୁ ମୃଣାଳ ବାବୁ ଅନେକ ଥର ସୁଦାମ ବାବୁଙ୍କ ସାହାଯ୍ୟରେ ହିଁ କୃତକାର୍ଯ୍ୟ ହୋଇ ସହକାରୀ ପୋଲିସ କମିସନର ପଦକୁ ଉନ୍ନୀତ ହୋଇ-ଥିବାରୁ ସୁଦାମ ବାବୁଙ୍କଠାରେ ସେ ଚିରକୃତଜ୍ଞ । ତେଙ୍କୁ ସେ ଅନେକ ଥର ଯାଇଅଛନ୍ତି; କିନ୍ତୁ ତାଙ୍କ କାର୍ଯ୍ୟକାଳ ସମୟରେ ସୁଦାମ ବାବୁଙ୍କର କଲିକତା ଆସିବାର ପ୍ରୟୋଜନ କମା ଘଟି ନ ଥିଲା । ଆଜି ସହସା ଅପ୍ରତ୍ୟାଶିତ ଭାବରେ ଉପକାରୀ ବନ୍ଧୁଙ୍କୁ ପାଇ ସେ ବଡ଼ ସୁଖୀ ହେଲେ । ହଠାତ୍ ଆସିବା କାରଣ ପୃଚ୍ଛା କରିବାରୁ ସେ କହିଲେ, "ଇମିତି ବୁଲିବାକୁ ଚାଲି ଆସିଲି ମ ।"

ମୃଣାଳ ବାବୁ କହିଲେ, "ପୂର୍ବର ସୂର୍ଯ୍ୟ ପଶ୍ଚିମରେ ଉଇଁଛି ଶୁଣି ବିଶ୍ୱାସ କରିପାରେ ; କିନ୍ତୁ ତମେ ବିନା ସ୍ୱାର୍ଥରେ ପାଦେ ବୁଲିବ, ଏହା ମୁଁ କେବେ ବିଶ୍ୱାସ କରିପାରିବି ନାହିଁ ।"

"ମୋର ଦୁର୍ଭାଗ୍ୟ ! କଣ କରିବ, କହ ? କିନ୍ତୁ ମୋର ଗୋଟିଏ କାମ କରିଦେବାକୁ ପଡ଼ିବ ଯେ ।"

"ବାଟକୁ ଆସ ବନ୍ଧୁ, ବ୍ୟାପାର କଣ ?"

"ବିଶେଷ କିଛି ନୁହେଁ; ମୋର ସହଯାତ୍ରୀ ଲୋକଟିକୁ ଦିନରାତି ଯତ୍ନରେ ରଖିବାକୁ ହେବ; ଅବଶ୍ୟ ସେ ଯେପରି ବୁଝି ନ ପାରେ ଯେ,

ସେ ନଜରବନ୍ଦୀ । ଗୋଟିଏ ଅସାମୀକୁ ସନାଖତ୍ କରାଇବା ପାଇଁ ଧରି ଆଣିଛୁ ।”

“ସେ ବନ୍ଦୋବସ୍ତ ଅତି ସହଜରେ ହେବ । ମୋର ଗୃହରକ୍ଷୀକୁ ଟିକିଏ ଇଙ୍ଗିତ କଲେ ହେଲା; କିନ୍ତୁ ବ୍ୟାପାର କଣ ? ହଠାତ୍ ସୁଦୁର ବାମିଁରୁ ଅଜି ଏଠି ଯେ ?

“କାମ ଅଛି ନିଶ୍ଚୟ; କିନ୍ତୁ ପୋଲିସକୁ କହିବା ମନା । ପ୍ରୟୋଜନ ବୁଝିଲେ ଗିରଫ କରିବା ପାଇଁ ତମ ସାହାଯ୍ୟ ନେବି; କିନ୍ତୁ ବର୍ତ୍ତମାନ ମୁଁ ଯେଉଁ ରହସ୍ୟ ଭେଦ କରିବା ପାଇଁ ଧାଇଁଛି, ତାହା ଅପ୍ରକାଶ୍ୟ ରଖିବା ପାଇଁ ପ୍ରତିଶ୍ରୁତିବଦ୍ଧ । ତେବେ ଜଣେ ସହକାରୀର ନିତାନ୍ତ ଦରକାର ମୋର ।”

“କିପରି ଲୋକ ଦରକାର ?”

“ପୋଲିସ କର୍ମଚାରୀ ନୁହେଁ ନିଶ୍ଚୟ ! ତମ ବିଭାଗରେ ମିଳିମିଶି କାମ କଲେ ଦୁଇ ଦିନ ପରେ କାଗଜ କଲମରେ ବିସ୍ତାରିତ ବିବରଣୀ ବାହାରି ପଡ଼ିବ । ଚୁପ ହୋଇ ରହିବା ତମମାନଙ୍କ କୋଷ୍ଠିରେ ନାହିଁ । ସେଥିରେ ମୋର ସବୁ ଶ୍ରମ ନଷ୍ଟ ହେବ, ମୁଁ ମିଥ୍ୟାବାଦୀ ହେବି ।”

“Private Worker ଜଣକୁ ନେବ ନା କଣ ?”

“ପାଇଲେ ବଡ଼ ଉପକୃତ ହେବି; କିନ୍ତୁ ଅତି ବେଶି ବିଶ୍ୱାସୀ ଲୋକର ଦରକାର ଯେ ମୋର ।”

“ନିଶ୍ଚୟ, ମୁଁ ଯାହାକୁ ତାହାକୁ ତମକୁ ଦେଇ ନ ପାରେ । ତେବେ ସମ୍ପ୍ରତି ସେ କଲିକତାରେ ନାହିଁ । ଦିନେ ଦୁଇ ଦିନ ମଧ୍ୟରେ ଫେରିବ । ବଡ଼ ଅଦ୍ଭୁତକର୍ମୀ ପିଲା ସେ । ମୋର ଏକ ବନ୍ଧୁଙ୍କ ପୁଅ I. Sc. ପାସ୍ କରି ଘରୁ ବାହାରିଛି ତାର ନିରୁଦ୍ଦିଷ୍ଟ ଭାଇର ଅନୁସନ୍ଧାନରେ । ଅନେକ ଖୋଜାଖୋଜି କଲା; କିନ୍ତୁ କୌଣସି ପତ୍ତା ପାଇଲା ନାହିଁ । ସେହି ଭାଇ ପାଇଁ ବାପ ତାର ଅକାଳରେ ମରିଗଲେ । ସେ ମଧ୍ୟ ଭବିଷ୍ୟତ ଉଜ୍ଜ୍ୱଳର ଅଶାଭରସା ଛାଡ଼ି ପଢ଼ାଶୁଣା ତ୍ୟାଗ କଲା । ଜମିବାଡ଼ି ବିକି ଭାଙ୍ଗି ଯାହା ପାଇଲା, ତାହା ହିଁ ସମ୍ବଳ କରି ବୁଲିଅସିଛି । ଦୁଇବର୍ଷ ହେଲା ବେଶରେ

ଦେଖିଲି, ଇମିତି ଅନୁସନ୍ଧାନର କାମ କରୁଛି ଯେ ସେ, ତାଠାରେ ମୁଣ୍ଡ ନୁଆଁଇବାକୁ ମୋର ବର୍ତ୍ତମାନ ଲଜ୍ଜା ନାହିଁ ।

କମିସନର ସାହେବ ତାକୁ C. I. D. ଅଫିସରେ ନେବା ପାଇଁ ଅନେକ ପ୍ରଲୋଭନ ଦେଖାଇଥିଲେ; ସେ କିନ୍ତୁ କୌଣସି ମତେ ମଙ୍ଗିଲା ନାହିଁ । ତାକୁ ନେଇ କାମ କଲେ ସୁଖ ଅଛି । ଭରସା ମଧ୍ଯ ଯଥେଷ୍ଟ, ସେ ଦିନେ ଦୁଇ ଦିନ ମଧ୍ୟରେ ଆସି ପହଞ୍ଚିବ—ତାକୁ ନେଇପାରନ୍ତି ।"

"ଅଶେଷ ଧନ୍ୟବାଦ ! କିଏ ସେ ?"

"ନାମ କହିଲେ କଣ ଚିହ୍ନିବ ? ଚିହ୍ନିବା ଭଳିଆ ପରିଚୟ ତାର କିଛି ନାହିଁ । ନାମ ତାର ସୁଧାଂଶୁ ଦାସ—ମଫସଲିଆ ପିଲା । × ×

× × ×

ଶ୍ରାନ୍ତକ୍ଲାନ୍ତ ସୁଦାମ ବାବୁ ଅଲକ୍ଷଣ ପାଇଁ ବିଶ୍ରାମ କରିବାକୁ ମନସ୍ଥ କରି ବିଛଣାରେ ପଡ଼ିବା ମାତ୍ରକେ କୁମ୍ଭକର୍ଣ୍ଣର ଦ୍ୱିତୀୟ ସଂସ୍କରଣ ରୂପେ ରାତି ୮ଟା ବେଳେ ଉଠି ଥରେ ମିର୍ଜାପୁର ଷ୍ଟ୍ରିଟରୁ ବୁଲି ଆସିଲେ—ମୁସଲମାନ ପରିବାର ଅଛନ୍ତି କି ନା, ଜାଣିବା ପାଇଁ । ସାରା ରାତି ଭାବି ଚିନ୍ତି ସ୍ଥିର କଲେ, ଘର ଭିତରକୁ ନ ପଶିଲେ କାମ ଚଳିବ କିପରି ? କିନ୍ତୁ ଗଙ୍ଗାଟାକୁ ସଙ୍ଗରେ ନେବେ କି ନା ? ସେ ଯଦି ଆକାର ଇଙ୍ଗିତରେ କିଛି ମାତ୍ର ପ୍ରକାଶ କରିଦିଏ, ସବୁ ପଣ୍ଡ ହେବ; କିନ୍ତୁ ତାକୁ ସଙ୍ଗରେ ନ ନେଲେ ତ କୁମାର ବାହାଦୁରଙ୍କୁ ଚିହ୍ନିବା କଠିନ । ସୁତରାଂ ଅନିଚ୍ଛା ସତ୍ତ୍ୱେ ଗଙ୍ଗା ସହିତ ବୁଲିବେଶରେ ଦୁହେଁ ବାହାରିପଡିଲେ ।

—ନଂ ମିର୍ଜାପୁର ଷ୍ଟ୍ରିଟରେ ଯାଇ ଦେଖନ୍ତି, ବେଳ ୮ଟା ଯାଏ କବାଟ ବନ୍ଦ । ବ୍ୟାପାର କଣ ? ଅଛନ୍ତି ତ ? ଯାହା ହେଉ, ଦୁଆରେ ଥରେ ଧକା ମାରି ଦେଖାଯାଉ । କବାଟ ପେଲିବା ସଙ୍ଗେ ସଙ୍ଗେ ଦୁଆର ଖୋଲିଗଲା । ବୁଲିବେଶଧାରୀ ସୁଦାମ ବାବୁ ଗଙ୍ଗାକୁ ନେଇ ଭିତରକୁ ଯାଇ ଦେଖନ୍ତି, କୌଣସି ଆଉ କେହି ନାହାଁନ୍ତି । କାଲିକାର ମୁସଲମାନ ପରିବାର ଅନ୍ତର୍ହିତ । ବାରଣ୍ଡାରେ ଛିଡ଼ା ହୋଇ ରହିଛନ୍ତି ଜଣେ ତରୁଣ ଯୁବକ ; ଠିକ୍ ଯେପରି ଏହି ମାତ୍ର ଫ୍ରାନ୍ସରୁ ଉଠି ଆସିଛନ୍ତି ! ଅନ୍ତତଃ ଦାଢ଼ିଗୁମ୍ଫ ଦେଖିଲେ ସିମିତି ମନେ ହୁଏ । ସୁଦାମ ବାବୁ ଯାଇ ସଲାମ କରି କହିଲେ—

"ହଜୁର, ବାଜାରରେ ଟଙ୍କାଟା ଚଳୁ ନାହିଁ ।"

"ଟଙ୍କା, ଟଙ୍କା କଣ ?"

"ଜାଲ ଯା ମଜୁରି ମିଳିଥିଲା ।"

"କାଲି ମୁଁ ତ ଗୁଡ଼ି ୪ଟା ଗାଡ଼ିରେ ଅସିଛି; ମୁଁ ତ କାହାରିକି ଟଙ୍କା ପଇସା କିଛି ଦେଇ ନାହିଁ ।"

"ଗୁରିଟାରେ କେଉଁ ଗାଡ଼ିରେ ଆଜ୍ଞା ?"

ଭଦ୍ରଲୋକ ଅବାକାବା ହୋଇ କହିଲେ, "ନା, ନା, ଦନ ଗୁରିଟା ଗାଡ଼ିରେ ଉଠିଥିଲି । ଏଠାକୁ ଅସିଛି ଗୁଡ଼ି ୮ଟା ବେଳେ ।"

"ଆଜ୍ଞା, ଏଠାକୁ ଜଣକେତେ ମୁସଲମାନ ଭଦ୍ରଲୋକ ଆସିଥିଲେ କି ? ସେମାନେ ଏହି ଟଙ୍କାଟି ଦେଇଥିଲେ । ହଜୁର, ସେଟା ବଜାରରେ ଜମା ଚଳୁ ନାହିଁ ।"

"କିଏ ଜାଣେ ବାବୁ, ମୁଁ ତ ସେମାନଙ୍କୁ ଦେଖି ନାହିଁ । ମୋର ବନ୍ଧୁ ଅତୁଲ ବାବୁ ଆଣି ଏଠି ମୋତେ ବସା ଦେଇଛନ୍ତି ।"

କଥାବାର୍ତ୍ତା ଶେଷ ହେଉଁ ନ ହେଉଁ ଅତୁଲ ବାବୁ ସ୍ୱୟଂ ଆସି ଦେଖା ଦେଲେ । ତାଙ୍କୁ ଚିହ୍ନିବାକୁ ସୁଦାମ ବାବୁଙ୍କୁ ଜମା ଡେରି ହେଲା ନାହିଁ । ସ୍ୱନାମଧନ୍ୟ ପୁରୁଷ ସେ; ରେଙ୍ଗୁନର ଅଧିକାଂଶ ଲୋକ ହିଁ ତାଙ୍କୁ ଚିହ୍ନନ୍ତି, ତାଙ୍କ କାର୍ଯ୍ୟକଳାପ ଜାଣନ୍ତି । ସେ ଆସି ତାଗିଦ କଲେ, "ଚଞ୍ଚଳ ଚାଲନ୍ତୁ, ଗାଡ଼ି ଅସିଛି ।" ତତ୍‌କ୍ଷଣାତ୍ ସୁଦାମ ବାବୁ ବାକ୍‌ସ ବାନ୍ଧିବା ପାଇଁ ନିଯୁକ୍ତ ହୋଇଗଲେ । ସବୁଜିନିଷ ନୂଆ; ପୁରୁଣା ତ୍ୟାଗ କରି ନୂତନର ଆଶ୍ରୟ ନିଆ ହୋଇଛି, ଅତୀତକୁ ନିଶ୍ଚିହ୍ନ କରିବା ପାଇଁ । ବାକ୍ସ ପତ୍ର ନେଇ ଅତୁଲ ବାବୁଙ୍କ ସଙ୍ଗରେ ସେହି ଭଦ୍ରଲୋକ ଗାଡ଼ିରେ ଯାଇ ଉଠିବା ମାତ୍ରକେ ସୁଦାମ ବାବୁ ପିଛା ଧରିବା ପାଇଁ ଟେକ୍ସି ଧରି ନନ୍ଦକୁମାର ଚୌଧୁରୀ ଲେନ୍‌ଟି ଦେଖି ଆସିଲେ; ଚିହ୍ନି ଆସିଲେ—ଅବସ୍ଥିତି ସ୍ଥାନ ବାହିଁ ।

ଗଙ୍ଗାକୁ ପଚାରିଲେ, "ଚିହ୍ନୁ ?"

"ନା ହଜୁର, ଏ ତ କୁମାର ବାହାଦୁର ନୁହନ୍ତି । ତେବେ ଉଚ୍ଚତା ଠିକ୍ ସମାନ, ଦେହର ରଙ୍ଗଟା ମଧ୍ୟ ଠିକ୍ ସେହିପରି—ଗୁଲି ଚଳଣି ସୁଦ୍ଧା ଅନେକଟା ଏକ ପ୍ରକାର ।"

"ହୁଁ" କହି ସୁଦାମ ବାବୁ ବସାକୁ ଫେରିଲେ ।

—୧୮—

ଛଦ୍ମବେଶରେ ହିମାଂଶୁ ଦାସ ଧନଯାଚକ ଅତୁଳ ବାବୁଙ୍କ ସଙ୍ଗରେ ସାରା କଲିକତା ସହରର ଘର ଫେରି ବାହୁ ଲାଗୁ କେତେ କଣ କହି ସାରି ବୃଦ୍ଧ ସାହେବଗୋଠାକୁ ଅଧୀର ଆବେଗରେ ଅନାଇ ବସି ରହିଥିଲା । ଆଜି ତାର ଯୌବନ-ସ୍ୱପ୍ନ ସଫଳ କରିବ ସେ—ଯାହା ପାଇଁ ମାନ, ଯଶ, ଖ୍ୟାତି, ଇମିତଙ୍କ ଷଟ୍‌ବେଳକୁ ପର୍ଯ୍ୟନ୍ତ ବଳି ଦେଇଛି ସେ ! ଆଜି ତାର କଳ୍ପନା-ସ୍ୱର୍ଗୀର ମୁକ୍ତି ପରଶ ପାଇବ । ସାହେବଗୋଠାଏ ବାଳୁବାଜ—ଏତେଦିନ ପରେ ସ୍ୱରୂପରେ ହିମାଂଶୁ ଦାସ ପଦାକୁ ବାହାରିଲା ଅତୁଳ ବାବୁଙ୍କ ଗାଡ଼ିରେ ବସି । ଶ୍ୟାମ ବଜାର—ନମ୍ବରର ଘରକୁ ଯାଇ ବାର ବାର କଡ଼ା ହଲାଇ ହଇରାଣ ହୋଇଗଲା କିନ୍ତୁ ଜବାବ ନାହିଁ । ବ୍ୟାପାର କଣ ? ନମ୍ବର ଭୁଲ ହୋଇ ନାହିଁ ତ ?

ପକେଟ ବୁକ୍ କାଢି ନମ୍ବର ମିଳାଇ ଦେଖିଲା । ନା, ଠିକ୍ ଅଛି ତ । ଲଳମାଧବ ବାବୁଙ୍କ ଦିଆ ଠିକଣା କଣ ଭୁଲ ହେବ ? ଥରକେତେ ପୁଣି ଜୋରରେ ହଲାଇ ଡ଼ାକ ପକାଇଲା, "ଲଳିତ ବାବୁ, ଲଳିତ ବାବୁ !"

ଦୁଇ ତିନି ଥର ଡ଼ାକିବା ପରେ ଉପରରୁ ଲଳିତ ବାବୁଙ୍କ ପୁତୁରା ସୁରେଶ୍ୱରର ନିଦ ଭାଙ୍ଗିଲା । ସେ ଆସି ଦୁଆର ଖୋଲିବା ମାତ୍ରକେ ଭୂମିର ଚମତ୍କାର ମୂଲ୍ୟବାନ ପ୍ରକାଣ୍ଡ ସୁଟକେଶଟାଏ ଡ୍ରାଇଭର ହାତରେ ଧରାଇ ଦେଇ ହିମାଂଶୁ ବାବୁ ପଚାରିଲେ, "ଲଳିତ ଦାଦା ଅଛନ୍ତି ?"

ସୁରେଶ୍ୱର କହିଲା, "ଶୋଇଛନ୍ତି ସେ ।"

"ଉପରେ" କହି ଉତ୍ତରର ଅପେକ୍ଷା ନ ରଖି ଡ୍ରାଇଭର ସଙ୍ଗରେ ଖଟ୍ ଖଟ୍ କରି ହିମାଂଶୁ ଧାଇଁ ଚଢ଼ିଲା । ଅପରିଚିତ ଭଦ୍ରଲୋକର ଉପରକୁ ଉଠିବା ଭଙ୍ଗୀ ଦେଖି ସୁରେଶ୍ୱରର ବୁଝିବାକୁ ବିନ୍ଦୁମାତ୍ର ବାକି ରହିଲା ନାହିଁ ଯେ, ଆଗନ୍ତୁକ କକେଇଙ୍କର ଅତି ଚେନି ଜଣାଶୁଣା କେହି ହେବେ ।

ହିମାଂଶୁର ଡାକରେ ଲଳିତ ବାବୁ କବାଟ ଖୋଲି ବାହାରକୁ ଆସିବା ମାତ୍ରକେ ହିମାଂଶୁ କହିଲା, "ଉଃ, କି ନିଦ, ମା ଲୋ ! ଠିକ୍ କଳିର କୁମ୍ଭକର୍ଣ୍ଣ । ମୁଁ ତ ଡାକି ଡାକି ହଇରାଣ ହୋଇ ସରିଲି, ତମେମାନେ ହୁଏ

ତ ଗାଁକୁ ଚାଲି ଯାଇଛ; ନ ହେଲେ ମୋର ଠିକଣା ଭୁଲ ହୋଇଛି । ମୋର ମୁଣ୍ଡ ଘୂରି ଗଲା ଭାଇ ! ସମୟ ଅଛି ଅଳ୍ପ, ଏଥି ମଧ୍ୟରେ ଚଞ୍ଚଳ ତମକୁ ନ ପାଇଲେ ମୋର ୩୦ ହଜାର ଟଙ୍କା ହାତକୁ ଆସୁ ନାହିଁ । ପୁଣି ସେଥିପାଇଁ କେତେ ଦୌଡ଼ା ଦୌଡ଼ି କରିବାକୁ ପଡ଼ିବ—କେତେ ଖର୍ଚ୍ଚ ହେବ । ସେ କଣ କମ ହଇରାଣିଆ କଥା !”

ଲଳିତ ବାବୁ ପଚାରିଲେ, “ବ୍ୟାପାର କଣ ?”

“ଚାଲ, ଏକୁଟିଆ ସବୁ କହିବି ।”

ସୁରେଶ୍ୱର ନିଜ କୋଠରିକୁ ଚାଲିଗଲା ।

ହିମାଂଶୁ ପଚାରିଲା, “କୁନ୍ଦ କାହିଁ ?”

“ଶୋଇଛି, ଭିତରକୁ ଅସ ।”

ଦୁହିଙ୍କର କଥାଭାଷାରେ କୁନ୍ଦର ନିଦ ଭାଙ୍ଗିଥିଲା । ପ୍ରଥମେ ନିଜ କାନକୁ ମଧ୍ୟ ବିଶ୍ୱାସ କରି ପାରିଲା ନାହିଁ ଯେ, ହଠାତ୍ ଏତେ ଦିନପରେ ଏହି ରାତି ସାଢ଼େ ଗୋଟାଏରେ ହିମାଂଶୁ ଦାଦା ଆସିବେ ତାର । ପ୍ରଥମ କଲିକତା ଆସିବା ଦିନ ସେହି ଯାହା କଟକ ଷ୍ଟେସନରେ ଦେଖା; ତା ପରେ ତ ତାଙ୍କର, କେବଳ ତାଙ୍କର କାହିଁକି, ସେ ଗାଁର ପରିଚିତ କାହାରି ଖଣ୍ଡିଏ ଚିଠି ମଧ୍ୟ ପାଇ ନାହିଁ ସେ । ସେ ଯେ ଚେଷ୍ଟା କରି କୌଣସି ସମ୍ବାଦ ପାଇବ, ତାର ମଧ୍ୟ ଉପାୟ ନାହିଁ । ଲଳିତ ବାବୁ ନିଜ ଅବସ୍ଥା ପରିବର୍ତ୍ତନର ଦିନଠାରୁ ନିଜକୁ ସବୁବେଳେ ପରିଚିତ ସଂସ୍ରବରୁ ଅଲଗା ରଖିବା ପାଇଁ ଅତି ବ୍ୟସ୍ତ । କୁନ୍ଦ ଉଠିବସି କହିଲା, “ହିମାଂଶୁ ଦାଦାର ବଡ଼ ଦୟା ଦେଖୁଛି ! କିନ୍ତୁ ଠିକଣା ପାଇଲ କିମିତି ?”

“ଶ୍ରୀମାଧବ ବାବୁଙ୍କ ବସାରୁ ।”

“କେଉଁଠାରୁ ଆସିଲେ ?”

“ବମ୍ବେଇରୁ ପରା !”

“ବମ୍ବେଇ !”

“ହଁ କୁନ୍ଦ, ଗୋଡ଼ହାତ ବାନ୍ଧି ଘରେ ବସି ରହିଲେ କଣ ଭାଗ୍ୟ ପରିବର୍ତ୍ତନ ହୁଏ ? ମୁଁ ସାରା ଜୀବନ ଏ ଦେଶରେ ଖଟି ମରିଥିଲେ ଯୁଝା ଏତେ ସଞ୍ଚୟ କରିପାରନ୍ତି କି ? ୬୦ ହଜାର ଟଙ୍କା ଅଛି ମୋର Impe-

rial Bank ରେ ଜମା ହୋଇଛି । ପୁଣି ୫୦ ହଜାର ଟଙ୍କା ସକାଶେ ଲଳିତ ବାବୁଙ୍କ ପାଖକୁ ଦରକାର କରିବା ପାଇଁ ଧାଇଁ ଆସିଛି । ସେ ଟିକିଏ ସାହାଯ୍ୟ କଲେ ଅକ୍ଲେଶରେ କାମ ହାସଲ ହେବ ମୋର ।" ହିମାଂଶୁ ସୁଟ୍‌କେଶ ଖୋଲି ସାତଶ ଟଙ୍କାର ମୂଲ୍ୟବାନ୍ ଆସମାନି ରଙ୍ଗର ଶାଢ଼ୀଟିଏ, ବ୍ଲାଉଜଟିଏ, ହୀରାର କ୍ଲିପ୍, ସେଫ୍‌ଟିପିନ, ସୁନାର ହାତକଙ୍କଣ ଯୋଡ଼, ମଖମଲର ଜୋତା ଯୋଡ଼େ ଥୋଇଦେଇ କହିଲା, "ବୃନ୍ଦ ! ଏସବୁ ତମେ ଟିକେ ଚଞ୍ଚଳ ପିନ୍ଧିନିଅ—ତମକୁ ମଧ୍ୟ ଆମ ସଙ୍ଗରେ ଥରେ ହାବଡ଼ା ଷ୍ଟେସନକୁ ଯିବାକୁ ପଡ଼ିବ କିନା ? ବମ୍ବେର ଜଣେ ଭଦ୍ରଲୋକ, ଯାହାଙ୍କ ପାଇଁ ମୋର ଏ ଉଦ୍ୟୋଗ, ସେ ସସ୍ତ୍ରୀକ ଆଜି ଏଲାହାବାଦ ଯାଉଛନ୍ତି । ତାଙ୍କ ବସାକୁ ମୋତେ ନେଇଯିବା ପାଇଁ ବଡ଼ ଜିଗର ଧରିଥିଲେ; କିନ୍ତୁ ମୋତେ ଜାଣ ତ ପିଲା ଦିନରୁ—ଯାହା ତାହା ଘରେ ଖାଇବାକୁ ମୋର ଜମା ରୁଚି ହୁଏ ନାହିଁ । ତା ପରେ ପୁଣି ସେମାନେ ବ୍ରାହ୍ମ । ବଡ଼ ଜିଗର କରିବାରୁ କହିଲି, ମୋର ଭଉଣୀଟିଏ ଅଛି ଏଠି; ଅନେକ ଦିନରୁ ତା ସହିତ ଦେଖାସାକ୍ଷାତ ହୋଇ ନାହିଁ । ଆଜି ଏଠାକୁ ଆସିବା ଖବର ସେ ଆଗରୁ ପାଇଛି । ମୁଁ ନ ଗଲେ କାନ୍ଦିକାଟି ଅନର୍ଥ କରିବ ସେ । ହୁଏ ତ ଆମ ଘରକୁ ଯିବାକୁ ଜମା ଅଭି ମଙ୍ଗିବ ନାହିଁ । ତାଙ୍କ ବଡ଼ ଝିଅଟିର ଜିଦ୍‌ରୁ ମୁକ୍ତି ପାଇଲି; ସ୍ଥିର ହେଲା—ତମମାନଙ୍କୁ ନେଇ ହାବଡ଼ାରେ ସେମାନଙ୍କ ସଙ୍ଗରେ ପରିଚୟ କରାଇଦେବି । ରଥ ଦେଖିବା, କଦଳୀ ବିକିବା, ଦୁଇ କାମ ଏକ ସଙ୍ଗରେ ସରିଯିବ । ଲଳିତ ବାବୁଙ୍କୁ ବିଦାୟ ଦେବା ଏବଂ ସେମାନଙ୍କ ସଙ୍ଗରେ ଆଳାପ କରିବା—ଦୁଇ କାମ ଯାକ ଏକାଠି ସରିବ ! ମନ୍ଦ କଣ ?"

ଲଳିତ ବାବୁ ପଚାରିଲେ, "ମୋତେ ବିଦାୟ ଦେବା ମାନେ ?"

"ମାନେ ଅତି ସହଜ । ଟ ୭୦ ଙ୍କା ବେତନରେ ମାଷ୍ଟରି କରି ଆପଣଙ୍କର ବିଶେଷ କି ଲାଭ ? ଅଧିକନ୍ତୁ ଭବିଷ୍ୟତ ଜୀବନର ଆଶାଭରସା ସବୁ ସେଇଥିରେ ହିଁ ରହିବ । ମୋର ଜଣେ ବିଶ୍ୱାସୀ ବନ୍ଧୁର ଏକାନ୍ତ ଦରକାର । ମୁଁ ତ ଏଠି ସବୁବେଳେ ବସିରହି ପାରିବି ନାହିଁ । ଜଣେ ଅଂଶୀଦାର ନ ହେଲେ ଜମା ମୋର କାମ ଚଳିବ ନାହିଁ । ମୋର ଟଙ୍କା, ଆପଣଙ୍କର ବୁଦ୍ଧି ଓ ଶ୍ରମ ଏକାଠି ମିଳାଇ ଏଠି ଗୋଟାଏ ଦୋକାନ

ଖୋଲିବା । ଅବଶ୍ୟ ପ୍ରଥମେ ହଜାର ପାଞ୍ଚଯାଏ ଟଙ୍କା ଲଗାଇବା, ତାପରେ କ୍ରମେ କ୍ରମେ ବଢ଼ାଇ ନେଲେ ଚଳିବ । ଏହି ସୁଟକେଶଟାରେ ଧୋତି, ଗୁଞ୍ଜି, କାମିଜ, କୋଟ, ପଞ୍ଜାବୀ, ସାବୁନ ସବୁ ରଖାଅଛି । ବେନାରସର ଟିକଟଟିଏ ମଧ୍ୟ କିଣି ରଖିଛି । ଆପଣ ଏହି ଚିଠିଖଣ୍ଡିକ ନେଇ ଶଙ୍କର ପ୍ରସାଦ ଗଣେଶ ପ୍ରସାଦର ଘରେ ଯାଇଁ ଦୁଇ ଦିନ ଅପେକ୍ଷା କରିବେ । ଇତିମଧ୍ୟରେ ମୋର ସନ୍ଧାନରେ ସେଠାକୁ ଯଦି କୌଣସି ଭଦ୍ରଲୋକ ଆସନ୍ତି, ତାଙ୍କୁ ଏହି ଚିଠିଟି ଦେଖାଇଲେ ସେ ୩୦ ହଜାର ଟଙ୍କା ତତ୍‌କ୍ଷଣାତ୍ ଥୋଇଦେବେ । ସେଗୁଡ଼ା ବେଙ୍କରେ ଜମା ଦେଇ ଆପଣ ଚାଲିଆସିବେ । ଏହି ଦେଢ଼ଶ ଟଙ୍କା ରଖନ୍ତୁ; ଖୁବ୍ ବଡ଼ଲୋକିଆ ଥାଟରେ ଚଳିବେ । ମୋର ବନ୍ଧୁ ଏବଂ ଅଂଶୀଦାର—ଯୋଗ୍ୟ ସମ୍ମାନ ଦେଖିବା ପାଇଁ ଯାହା ଉଚିତ ମନେ କରିବେ, ତାହା ଖରଚ କରିବାକୁ ଜମା...... କିନ୍ତୁ କରିବେ ନାହିଁ । ମୁଁ ନିଜେ ଯାନ୍ତି; କିନ୍ତୁ କାଲି ମୁଁ ଏଠାରେ ନ ରହିଲେ ବିଶେଷ କ୍ଷତି ହେବ । ବୁଦ, ତମେ ଏହି ୩ ହଜାର ଟଙ୍କା ତମ ବାକ୍ସରେ ଥୋଇଦେଇଥାଅ ଭଉଣୀ ! ୨ଟା ୩୫ରେ ଗାଡ଼ି, ଟିକେ ଚଞ୍ଚଳ ପ୍ରସ୍ତୁତ ହୁଅ । ଗାଁ ଖବର କଣ କିଛି ଜାଣନ୍ତି ?”

“ନା ଭାଇ, କଲିକତା ଆସି ତାହାର କିଛି ଖବର ପାଇ ନାହିଁ ମୁଁ ।”

“ପାଇବା ଇଚ୍ଛା ଥିଲେ ତ ପାଇବେ !”

ବୁଦ ପୋଷାକପତ୍ର ପିନ୍ଧି ଆସି ଦୁଆରେ ଛିଡ଼ା ହେଲା ତାର ଅପରୂପ ରୂପର ସୀମା ନାହିଁ । ହିମାଂଶୁର ବୁକୁରେ ବିଜୟ ବାଜଣା ବାଜି ଉଠିଲା—ଧକ୍, ଧକ୍, ଧକ୍, ଧକ୍

× × × × × ×

ଗାଡ଼ି ଆସି ହାୱଡ଼ା ପୋଲ ଉପରେ ପହଞ୍ଚିବା ମାତ୍ରକେ ହିମାଂଶୁ ଲଳିତ ବାବୁଙ୍କ ହାତ ଦୁଇଟି ଧରି କହିଲା, “ଭାଇ ଲଳିତ ଦା ! ବିଦେଶରେ ମୋର ଏକମାତ୍ର ବନ୍ଧୁ, ପରିଚିତ, ମଙ୍ଗଳାକାଂକ୍ଷୀ ଆପଣ । ମୋର ଏ ଉନ୍ନତି ମୂଳରେ ତାଙ୍କର ପ୍ରେରଣା ରହିଛି—ଯିଏ ମୋତେ ଦେଖିଥିଲେ ଠିକ୍ ତାଙ୍କ ପୁଅ ପରି । ସେ କଥା ହୁଏ ତ ଆପଣଙ୍କୁ ଜଣା ନ ଥିବ; କିନ୍ତୁ ବୁଦ

ତ ସବୁ ଜାଣେ । ପିତାର କଥା ବୃନ୍ଦଠାରୁ ବେଶି ଜାଣେ କିଏ ? ତାଙ୍କର ଏକମାତ୍ର ଆଦରର ସମ୍ପଦ ବୃନ୍ଦ ପାଇଁ ଯଦି ମୁଁ କିଛି କରେ—ରକ୍ତ ସମ୍ବନ୍ଧ ନାହିଁ ବୋଲି ମୋତେ ଯେପରି ଦୂରକୁ ଫୋପାଡ଼ି ନ ଦିଅ—ଏହା ହିଁ ମୋର ମିନତି ଭାଇ ।"

"ଶୁଣିଥିଲି, ତମର ଟିକିଏ ପାଗଳାମି ଅଛି । ଏବେ ଦେଖୁଛି, ତହୁଁ ଢେର ବେଶି—।"

"ହଁ, ହୁଏ ତ ମୁଁ ପାଗଳ; କିନ୍ତୁ ତଥାପି ମୋର ଅନୁରୋଧ, ମୁଁ ବୃନ୍ଦକୁ ବା ଆପଣଙ୍କୁ ଯାହା କିଛି ଭାଗ ଦେବି, ତାହା ଯେପରି କେବେ କୌଣସିମତେ କୌଣସିଠାରେ ପ୍ରକାଶ ନ ହୁଏ । ଏ ଦୁନିଆ ବଡ଼ କଠିନ ସ୍ଥାନ, ହୁଏ ତ ତମମାନେ ଚିହ୍ନି ନାହଁ ।"

ଗାଡ଼ି ଆସି ହାବଡ଼ା ଷ୍ଟେସନରେ ପହଞ୍ଚିଲା । ବୋମ୍ବାଇର ସେ ଭଦ୍ର-ଲୋକଟିର ସନ୍ଧାନ କରି ହିମାଂଶୁ ଆସି ଖବର ଦେଲା ଯେ, ହଠାତ୍ ଟେଲି-ଗ୍ରାମ ପାଇ ସିମଲା ଚାଲିଯାଇଛନ୍ତି ସେ; ସୁତରାଂ ହାବଡ଼ାରେ ଦେଖା ମିଳିବ ନାହିଁ । ତାଙ୍କ ଚପରାସୀ ଖବର ଦେବା ପାଇଁ ଆସିଥିଲା ।

ଗାଡ଼ି ଛାଡ଼ିବା ସଙ୍ଗେ ସଙ୍ଗେ ଧାଇଁ ଧାଇଁ ହିମାଂଶୁ କହିଲା, "ଲଳିତ ବାବୁ, ଗୋଟାଏ ଭୁଲ ହୋଇଛି, ତମ ଅନୁମତିର ଏକାନ୍ତ ଲୋଡ଼ା । କାଲି ମୁଁ ବୃନ୍ଦକୁ ନେଇ ସତୀଶ ଦାସର ଦୋକାନକୁ ଯିବି ତାର କେତେ କୁଡ଼ାଏ ଗହଣା ପାଇଁ ।"

"ତମ ଭଉଣୀକୁ ତମେ ନେଇଯିବ, ସେଥିରେ ମୋର ଅନୁମତିର ଲୋଡ଼ା କଅଣ ?"

ଦୁସ୍ ଦୁସ୍ କରି ଗାଡ଼ି ଛାଡ଼ିଦେଲା । ହିମାଂଶୁ ଡାକିଲା, "ବୃନ୍ଦ ।"

ଦୁହେଁ ଆସି ମୋଟରରେ ବସିଲେ ।

ହିମାଂଶୁ କହିଲା, "ବଡ଼ ରାଗ ଲାଗୁଛି ନା ?"

"କାହିଁ ?"

"ଆହା, ଶେଷ ଘଣ୍ଟିରେ ଲଳିତ ବାବୁକୁ ଏମିତି ଠକିଦେଲି । ଅଚ୍ଛା, ବୃନ୍ଦ, ଇମିତି ସନ୍ଧ୍ୟାବେଳରେ ଗାଁରେ ଦୁହେଁ ବୁଲିଥିଲେ—"

"ସକାଳକୁ ଏକଥା ରଖ; ମୁହଁ ଦେଖାଇବାକୁ ବାଟ ନ ଥାଉ ।"

"ଗୋଟିଏ କଥା ପଚାରିବି, ମିଛ କହିବ ନାହିଁ ତ ? ଆଜି ମୋର ରକ୍ତ ଗରମ, ମଥା ଘୂରୁଛି । ଦୁଃଖି-ଗରିବ ଆଜି ଲକ୍ଷପତି ; ରକ୍ତ ମୁଣ୍ଡକୁ ଉଠିଛି । ମୁଁ ଯଦି ଆଜି କିଛି ଭୁଲ କରେ , ମାଫ କରିପାରିବ କି ? ଘରର ଅନ୍ଧାରରେ ତା ଚିରକାଳ ଲୁଚାଇ ରଖିପାରିବ ?"

"କଥାଟା କଣ ?"

"ଯାହା ହେଉ, ଗୋପନ ରଖିବ କି ?"

"ଅଚ୍ଛା ରହିବ ।"

"ଶପଥ କର ।"

"ତମକୁ କଥା ଦେବା ଉପରେ ଆଉ ଶପଥ ଅଛି ବୋଲି ମୋର ଜଣା ନାହିଁ ।"

ହିମାଂଶୁ ଟାଣିଆଣିଲା ତାର କୁନ୍ଦକୁ—ତାର ଚିର ଆକାଙ୍କ୍ଷିତାକୁ ତାହାର ଛାତିକୁ । କୁନ୍ଦ ଐଶ୍ୱର୍ଯ୍ୟର ମୋହରେ ବାଲ୍ୟସ୍ମୃତିର ମାଦକତାରେ ମାତାଲ ହୋଇ ହିମାଂଶୁର ବକ୍ଷରେ ମୁହଁ ଲୁଚାଇ ଆତ୍ମସମର୍ପଣ କଲା । ହିମାଂଶୁ ଆଦେଶ କଲା, "ଡ୍ରାଇଭର, ଗାଡ଼ି ଚଳାଓ ନନ୍ଦକୁମାର ଚୌଧୁରୀ ଲେନ୍‌କୁ ।"



—୧୯—

୩୭ ନମ୍ବର କୋଠରୀ
ପାଗଲା ଗାରଦ
ମୁର୍ଶିଦାବାଦ

ବାସିନ୍ଦା ଶ୍ରୀମାନ୍ ସୁଧାଂଶୁଶେଖର ଦାସ, ହିମାଂଶୁର ସହୋଦର କହିଲେ ହିଁ ତାର ପରିଚୟଟି ଯଥେଷ୍ଟ ରୂପେ ସୁସ୍ପଷ୍ଟ ହୋଇଉଠିବ । ହିମାଂଶୁର ସହୋଦର ସତ୍ୟ କିନ୍ତୁ ଉଭୟର ପ୍ରକୃତି ସମ୍ପୂର୍ଣ୍ଣ ବିପରୀତ । ହିମାଂଶୁ ଧାଇଁଲା କୁନ୍ଦକୁ ପାଇବା ପାଇଁ ନ୍ୟାୟ ଧର୍ମ ବିବେକ ସବୁ କିଛି ବଳି ଦେଇ ସୁଦୂର ବମ୍ବାକୁ କୁମାର ଧୂର୍ଜଟି ପ୍ରସାଦ ସାଜି । କେତେ ଖେଳ

ଖେଳିଲାଣି ସେ—କେତେ ଅବା ଖେଳିବ ଆଉ, କିଏ ଜାଣେ ? ଦୁଇ ସହୋଦର ନିକଟରେ ଥାଇ ପାଠ ପଢ଼ୁ ପଢ଼ୁ ଘରକୁ ଯାଇ ସାନଭାଇ ହିମାଂଶୁ ସେହି ଯେ ନିରୁଦ୍ଦେଶ ହେଲା, ଆଜି ତାର ତଥ୍ୟ ତଲ୍ଲାସ ଜମା କିଛି ମିଳିଲା ନାହିଁ । ଦିନା କେତେ ଅତି କଷ୍ଟରେ ସୁଧାଂଶୁ ନିକଟରେ ଥାଇଁ ଥାଇଁ ହଠାତ୍ ଟେଲିଗ୍ରାମ ପାଇଲା—ପିତା ତାର ମୃତ୍ୟୁଶଯ୍ୟାରେ । ଘରକୁ ଯାଇ କ୍ଷମତାର ଅତିରିକ୍ତ ଖରଚ ପତ୍ର କରି ଚିକିତ୍ସା କରାଇଲା; କିନ୍ତୁ ହିମାଂଶୁ ପ୍ରୌଢ଼ତ୍ୱର ଶେଷସୀମାରେ ପିତାଙ୍କ ବୁକୁରେ ଯେଉଁ ଗୁରୁତର ଆଘାତ ଦେଇଗଲା, ତରୁଣ ବୁକୁ ତ ତା ସହି ନ ପାରେ, ସେ ଅବା ସହିବେ କିମିତି ? ଗୋଧୂଳିର ମ୍ଳାନ ଆଲୁଅରେ ଦିନେ ସମସ୍ତ ଶୋକ ଦୁଃଖ ଭୁଲି ଯେଉଁ ଅଜଣା ପଥର ପଥିକ ହେଲେ ସେ । ସୁଧାଂଶୁର ଗୃହଆଙ୍ଗେ ଅନ୍ଧକାର ଘନାଇ ଆସିଲା । ଦୁର୍ଭାଗ୍ୟ ତ ଏକୁଟିଆ ଆସେ ନାହିଁ । ନୂତନ ମେନେଜର ଆସି ହିସାବ ପତ୍ର ଦେଖି ଆବିଷ୍କାର କଲେ—ସୁଧାଂଶୁର ପିତା ପ୍ରାୟ ୧ ହଜାର ଟଙ୍କା ଆତ୍ମସାତ୍ କରିଅଛନ୍ତି । ସୁଧାଂଶୁ ମାଲି-ମୋକଦ୍ଦମା ଆଡ଼କୁ ନ ଯାଇ ବିଚାର ସକାଶେ ଜମିଦାରଙ୍କ ପାଖରେ ହିଁ ଯାଇ ଛିଡ଼ା ହେଲା ତାର ନିଷ୍କୃତିର ଉପାୟ ଲାଗି । ତାଙ୍କର ଅନୁଗ୍ରହରେ ନିଷ୍ପତ୍ତି ହେଲା—ସୁଧାଂଶୁ ସମସ୍ତ ଜମିବାଡ଼ିର ସତ୍ତ୍ୱ ଛାଡ଼ିଦେବ ଏବଂ ପାଇବ ତାର ଅନ୍ତରକୁ ପ୍ରାପ୍ୟ ଦେଢ଼ ହଜାର...ନଗଦ ଟଙ୍କା । ତାହା ହିଁ ସମ୍ବଳ କରି ନିଜ ଭବିଷ୍ୟତ ଉନ୍ନତିର ସମସ୍ତ କାମନାବାସନାରେ ଜଳାଞ୍ଜଳି ଦେଇ ବାହାରିଲା ସେ ନିରୁଦ୍ଦିଷ୍ଟ ଭାଇର ସନ୍ଧାନରେ—ତରୁଣ ବୟସ, କୋମଳ ପ୍ରାଣ, ଆଶାମୟ ଆକାଂକ୍ଷାମୟ ମନରେ । ଅମିତସାହସ ଭାଇକୁ ଫେରାଇ ପାଇଲେ ନୂହେଁ ମିଳି ଯେ କୌଣସି କାମରେ ହାତ ଦେବେ, ତହିଁରେ ହିଁ ସାଫଲ୍ୟ ସୁନିଶ୍ଚିତ । ଅବସ୍ଥାର ପରିବର୍ତ୍ତନ ଘଟାଇବାକୁ ଡେରି ବା ଲାଗିବ କେତେ ? କିନ୍ତୁ ତାର ସବୁ ଆଶାଭରସା ଭାଙ୍ଗିଗଲା ସେହିଦିନ, ଯେଉଁଦିନ ଦେଖିଲା ତହବିଲ ତାର କ୍ରମେ ଶୂନ୍ୟ ହୋଇଆସିଛି । ଏବେ କରେ କଣ ? ସେ ତ ତାର ଭାଇ ପାଇଁ ସ୍ଥାନ ଅସ୍ଥାନ ଗୃହଆଙ୍ଗେ ଘୂରିଲା—କେତେ ଦେଶ ବିଦେଶ ବୁଲିଲା ତଥାପି ତାର ଦର୍ଶନ ପାଇଲା ନାହିଁ । ଏବେ କଣ କରିବ ସେ ? କିମିତି କରି ଦିନ କଟାଇବ ? କଲିକତା ପହଞ୍ଚି ନବୀନ

ଉଦ୍ୟମରେ ଦିନାକେତେ ଘୁରିଘୁରି କରୁଁ କରୁଁ ହଠାତ୍ ଆଖିରେ ପଡ଼ିଲା ଗୋଟିଏ ସନ୍ଦେହର ଗନ୍ଧର ଛାୟା । ମନେ ହେଲା, ପାର୍କଷ୍ଟ୍ରିଟର ଏହି ବଡ଼ଘରଟି ଗୋଟାଏ ଗୋପନ ରହସ୍ୟର ଜାଲରେ ବେଢ଼ା । କୌତୂହଳୀ ହୋଇ ଦିନରାତି ସେ ଘରଟି ଉପରେ, ଯିବା ଆସିବା ଲୋକଙ୍କ ଉପରେ ତୀକ୍ଷ୍ଣଦୃଷ୍ଟି ରଖି ରହସ୍ୟ ଭେଦ କଲା ସେ । ଗୋଟିଏ ପ୍ରକାଣ୍ଡ ଚୋର, ସଙ୍ଗେ ସଙ୍ଗେ ଦୁଇଟି ଯୁବତୀର ହତ୍ୟାକାଣ୍ଡ ପ୍ରକାଶିତ ହୋଇପଡ଼ିଲା । ପୋଲିସ୍ କମିଶନର ସୁଧାଂଶୁ ପାଇଁ ନିଜେ ଯଥେଷ୍ଟ ସମ୍ମାନ ପାଇଲେ । ସୁଧାଂଶୁର ତୀକ୍ଷ୍ଣବୁଦ୍ଧିରେ ମୁଗ୍ଧ ହୋଇ C. I. D. ଅଫିସରେ ଏକଶତ ଟଙ୍କାର ଗୋଟିଏ ଚାକିରି ଦେବାକୁ ମଧ୍ୟ ଇଚ୍ଛା ପ୍ରକାଶ କରିଥିଲେ ସତ୍ୟ, କିନ୍ତୁ ଚାକିରି ଧରି ବସିଲେ ଭାଇକି ଖୋଜିବାର ସୁବିଧା ହେବ ନାହିଁ ଭାବି ଧନ୍ୟବାଦ ଜଣାଇ ସୁଧାଂଶୁ ସେ ପ୍ରସ୍ତାବ ଅସ୍ୱୀକାର କଲା । ସ୍ୱାଧୀନ ବ୍ୟବସାୟ କରିବାର ଅଭିମତ ଜାଣି କମିସନର ସାହେବ Government ଙ୍କ ଘୋଷିତ ପୁରସ୍କାର ଦେଇ ତାକୁ ସମ୍ମାନିତ କଲେ । ସଙ୍ଗେ ସଙ୍ଗେ ଆଉ ଦୁଇଟି Case ତା ହାତରେ ଦେଇ କହିଲେ, "ଏହା ପାଇଁ ଯାହା ଖରଚ ହେବ, ଆମ ଅଫିସରୁ ଯାଇ ନେଇ ଆସିବ ।" ନୂତନ ଉଦ୍ୟମରେ ସୁଧାଂଶୁ କାମରେ ଲାଗିଗଲା । ଏହି ଦୁଇଟି କାମ ପାଇଁ ତାକୁ ନାନା ସ୍ଥାନ ବୁଲିବାକୁ ପଡ଼ିବ । ଭଲ କଥା—ସଙ୍ଗେ ସଙ୍ଗେ ପର ଖରଚରେ ହିମାଂଶୁର ମଧ୍ୟ ସନ୍ଧାନ ନେବାର ଯଥେଷ୍ଟ ସୁଯୋଗ ମିଳିଯିବ । ଅଳ୍ପଦିନ ମଧ୍ୟରେ ସୁଧାଂଶୁ ଗୋଏନ୍ଦା ବିଭାଗର ଜଣେ ଗଣ୍ୟମାନ୍ୟ ଲୋକ ହୋଇ ଉଠିଲା । ତାର ପ୍ରତାପ ପ୍ରତିପତ୍ତି ଦେଖି ଅନେକ ପୁରୁଣା କର୍ମଚାରୀ ମଧ୍ୟ ତାକୁ ହିଂସା କରିବାକୁ ଲାଗିଲେ; କିନ୍ତୁ କଲେ କଣ ହେବ ? ସେମାନଙ୍କେ ଜଣେ କାମିକା ଲୋକ; ତା ପରେ ପୁଣି କମିସନର ସାହେବଙ୍କର ଦକ୍ଷିଣ ହସ୍ତ ହୋଇ ଉଠିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନେକ ସମୟରେ ବଡ଼ ବଡ଼ ଅଫିସରମାନଙ୍କୁ ମଧ୍ୟ ନତମସ୍ତକରେ ସୁଧାଂଶୁର ହୁକୁମଦାରୀ କରିବାକୁ ପଡ଼େ, ସମ୍ପୂର୍ଣ୍ଣ ଅନିଚ୍ଛାସତ୍ତ୍ୱେ । ସୁଧାଂଶୁ ସେଦିନ କଣ ଗୋଟାଏ Case ସମ୍ବନ୍ଧରେ ତାର ଡାଇରିର ପତର ଓଲଟାଇ ଦେଖୁଛି, ଚାକର ଆସି କହିଲା, "ବାବୁ ସାହେବ, ଜଣେ ଭଦ୍ରଲୋକ ଦେଖା କରିବାକୁ ଆସିଛନ୍ତି ।"

"ମୋ ସଙ୍ଗରେ ?"

"ଆଜ୍ଞା ।"

"ଯା, ଦେଖ ଆ ।"

ସୁଦାମ ବାବୁ ଯାଇ ପୋଲିସ୍ କମିଶନର ମୃଣାଳ ବାବୁଙ୍କ ପତ୍ରଟି ଦେଇ ସୁଧାଂଶୁର ପ୍ରଦତ୍ତ ଚେୟାରଟିରେ ବସି ପଡ଼ିଲେ । ପତ୍ର ପଢ଼ି ସୁଧାଂଶୁ ପୁଲକିତ ହୋଇ କହିଲା, "ମୋର ଭାଗ୍ୟ ଯେ, ବର୍ମାର ସୁନାମଧନ୍ୟ ଗୋଏନ୍ଦାର ପଦାର୍ପଣ ହେଲା ମୋ ଦ୍ୱାରରେ ।"

"ଗୋଏନ୍ଦାର ପଦାର୍ପଣ କିନ୍ତୁ ବାଞ୍ଛନୀୟ ନୁହେଁ ।"

"ଅବଶ୍ୟ ପ୍ରତିଦ୍ୱନ୍ଦୀ ପକ୍ଷେ, ଅପରାଧୀ ପକ୍ଷେ ।"

"ନିଶ୍ଚୟ, ନିଶ୍ଚୟ, ମୁଁ ଅଛି ଆପଣଙ୍କ ସାହାଯ୍ୟ ପାଇଁ ଅସିଅଛି ।"

"ଆଦେଶ କରନ୍ତୁ ।"

"ମୁଁ ଗୋଟିଏ ଜଟିଳ ମାମଲା ନେଇ କଲିକତା ଆସିଛି । ପ୍ରତିଶ୍ରୁତି ଦେଇଛି—ଘଟଣାଟି ସାଧାରଣ ଚକ୍ଷୁରେ ଅପ୍ରକାଶ୍ୟ ରହିବ । ସୁତରାଂ ସମ୍ପ୍ରତି ପୋଲିସ୍ ସାହାଯ୍ୟ ମୋ ପକ୍ଷରେ ସମ୍ପୂର୍ଣ୍ଣ ଅନାବଶ୍ୟକ । ତେବେ କମିସନର ମୃଣାଳ ବାବୁ କହିଛନ୍ତି, ଯେତେବେଳେ ପୋଲିସ୍‌ର ସାହାଯ୍ୟ ଖୋଜିବି ଅସାମୀମାନଙ୍କୁ ଗିରଫ କରିବା ପାଇଁ, ତତ୍‌କ୍ଷଣାତ୍ ପାଇବି ମୁଁ ।"

"ପୋଲିସ୍‌ଠାରୁ ଗୋପନ ରଖି ପୋଲିସ୍ ସାହାଯ୍ୟ ପାଇବେ କିମିତି ?"

"ପୋଲିସ୍‌ଠାରେ ଗୋପନ ରଖି ତାହାର ସାହାଯ୍ୟରେ ହିଁ ଗିରଫ କରି ଅଦାଲତରେ ଆସାମୀମାନଙ୍କୁ ହାଜର କରି ଦଣ୍ଡିତ କରାଇହେବ, ଇମିତି ବାଟ ଅଛି ନିଶ୍ଚୟ ।"

"ମୋଠାରେ ମଧ୍ୟ ସବୁକଥା କି ପ୍ରକାଶ କରିବାକୁ ଆପତ୍ତି ଅଛି ?"

"ସମ୍ପ୍ରତି କେତେକ ଅଂଶ ବାଦ ଦେବାକୁ ପଡ଼ିବ ।"

"ମୁଁ ଏପରି ଅନ୍ଧଭାବରେ ଆଜିଯାଏ କାମ କରି ନାହିଁ—କରନ୍ତି ମଧ୍ୟ ନାହିଁ; କେବଳ ବିଶ୍ୱବିଖ୍ୟାତ ଗୋଏନ୍ଦାଙ୍କ ଆଦେଶ ଏବଂ ଉପକାରୀ ମୃଣାଳ ବାବୁଙ୍କ ଅନୁରୋଧ ଏଡ଼ି କାମ କରିବା ମୋର ସାଧ୍ୟର ଅତୀତ ।"

"ଆପଣଙ୍କ ସୁନାମ ଶୁଣି ଆପଣଙ୍କୁ ହିଁ ଏ କାମର ଯୋଗ୍ୟ ଲୋକ ସାହାଯ୍ୟ ପାଇଁ ଧାଇଁ ଆସିଛୁ । ଆପଣଙ୍କୁ ବିଶେଷ କିଛି ଗୋପନ କରିବି ନାହିଁ; ତେବେ ଆପଣ ମଧ୍ୟ ପ୍ରତିଶ୍ରୁତ ହୁଅନ୍ତୁ—ଏ କଥା ପ୍ରକାଶ କରି ମୋତେ ମିଥ୍ୟାବାଦୀ ପ୍ରମାଣିତ କରିବେ ନାହିଁ ।"

"ସେ ସମ୍ବନ୍ଧରେ ନିଶ୍ଚିତ ଥାନ୍ତୁ ।"

"ରେଙ୍ଗୁନରୁ ଆସିଛି ଦୁଇ ଜଣ ଛଦ୍ମବେଶୀର ପିଛା ଧରି । ସେମାନଙ୍କ ସଙ୍ଗରେ ଦୁଇଜଣ ସ୍ତ୍ରୀଲୋକ ଅଛନ୍ତି । କଲିକତା ପର୍ଯ୍ୟନ୍ତ ସ୍ତ୍ରୀଲୋକ ଦୁଇଟିଙ୍କ ମଧ୍ୟରୁ ଜଣକ ଉପରେ ମୋର ଗୁରୁତର ସନ୍ଦେହ ହେଉଛି । ମୋର ଯଦି ଏ ବିଭାଗରେ ବିନ୍ଦୁମାତ୍ର ଅଭିଜ୍ଞତା ଥାଏ, ତେବେ ମୋର ବିଶ୍ୱାସ, ସେ କେବେ ସ୍ତ୍ରୀଲୋକ ନୁହେଁ—ହୋଇ ପାରେ ନା, କେବେ ।"

"ତେବେ ?"

"ଆମ ପରି ନରପୁଙ୍ଗବ, ବୋରଖାରେ ସମସ୍ତ ଦେହ ମୁହଁ ଢୋଙ୍କା; ସୁତରାଂ ମୁହଁ ଦେଖି ଚିହ୍ନିବା ଏକାବେଳକେ ଅସମ୍ଭବ । ଡାହାଣ ଗୋଡ଼ଟା ଆଗରେ ପକାଇ କୌଣସି ସ୍ତ୍ରୀଲୋକ ଚାଲେ କେବେ ଜାଣନ୍ତି ? ଚାଲି-ଚଳଣରୁ ଜଣାପଡ଼େ, ସେ କେବେ ସ୍ତ୍ରୀଲୋକ ନୁହେଁ । ଜିନିଷପତ୍ର ନେଇ ସେମାନେ ମିର୍ଜାପୁର ଷ୍ଟ୍ରିଟର — ନମ୍ବର ଘରେ ଯାଇ ଉଠିଲେ ଦେଖି ମୃଣାଳ ବାବୁ ଘରକୁ ଚାଲିଗଲି । ପରେ ଯାଇ ଦେଖେଁ, ଦଳବଳ ନେଇ ସେମାନେ ଉଠି ଯାଇଛନ୍ତି । ସେଠାରେ ରହିଛି ଜଣେ ଅପରିଚିତ ଭଦ୍ର-ଲୋକ; କିନ୍ତୁ ତା ସଙ୍ଗେ କଥାବାର୍ତ୍ତା କରି କିମିତି ଗୋଟାଏ ସନ୍ଦେହ ହେଲା । ଦିନରାତି ଛାୟାପରି ତା ପଛରେ ପଛରେ ଗୋଡ଼ାଇଲି, ଏତେବେଳଯାଏ ତାକୁ ମୁଁ ଜମା ଛାଡ଼ିପାରୁ ନାହିଁ । ମୋର ଦୃଢ଼ ବିଶ୍ୱାସ, ଏ ଜଣେ ସେହି ଦଳଆ କେହି ହେବ । ଏହି କେଇ ଦିନ ମଧ୍ୟରେ ଦିନେ ସୁଦ୍ଧା ସେ ଦଳର କେହି ଏହା ସଙ୍ଗେ ଦେଖା କରିବାକୁ ଆସି ନାହାନ୍ତି । କିନ୍ତୁ ଅତୁଲ ବାବୁ ବୋଲି ଜଣେ ଲୋକ ପ୍ରାୟ ଏହା ବସାକୁ ଆସେ—ଫିସ୍‌ଫାସ୍ କଥାବାର୍ତ୍ତା ଚଳେ; ସୁତରାଂ ତାହାର ପଛା ଧରି ଆପଣଙ୍କ ସେ ଦଳର ଆଡ୍ଡାଟି ଆବିଷ୍କାର କରିବାକୁ ହେବ ।"

"ତା ପରେ ?"

"ତା ପରେ ଦେଖା ମିଳିଲେ ଉପଯୁକ୍ତ ଚିନ୍ତା କରାଯିବ । କିନ୍ତୁ ସବୁବେଳେ ସଙ୍ଗରେ ପିସ୍ତଲ ରଖିବାକୁ ଭୁଲିବେ ନାହିଁ । ବଡ଼ ଭୀଷଣ ଲୋକ ଏମାନେ ।"

"ଅତୁଳଟା କି ଏହି ଦଳର ଲୋକ ?"

"ଠିକ୍ ଦଳର ନୁହେଁ, ତେବେ ସମ୍ଭବତଃ ଏମାନଙ୍କ ସଙ୍ଗରେ ତାର ସ୍ୱାର୍ଥ ଜଡ଼ିତ ବୋଲି ମୋର ବିଶ୍ୱାସ । ଏହାର ଅତୀତଜୀବନ ଅତି କଦର୍ଯ୍ୟ ଅତୁଳର ପିଛା ଧରି ଆପଣ ଅଡ୍ଡାଟି ଆବିଷ୍କାର କରନ୍ତୁ । ତା ପରେ ଭିତରକୁ ଯିବାର ବ୍ୟବସ୍ଥା କରି ଜାଣିବାକୁ ପଡ଼ିବ—ସେମାନେ କିଏ ? କେଉଁଠୁ ଆସିଛନ୍ତି ? ସେ ଦୁଇ ଜଣ ଲୋକ ସବୁବେଳେ ଛଦ୍ମବେଶରେ ଥିବେ ବୋଲି ମୋର ଧାରଣା । ତେବେ ସେ ମଧ୍ୟରୁ ଜଣକୁ ଚିହ୍ନିବା ବଡ଼ ସହଜ । ଲୋକଟା ଗେଡ଼ା, ବେଶ ମୋଟାସୋଟା; କାଁ ଗୋଡଟା ଟିକେ ଛୋଟ । ଅପର ଲୋକଟି ବେଶ ଲମ୍ବା, ଯୁଆନ୍ । ସ୍ତ୍ରୀଲୋକଟିର ଫଟୋ ମୋପାଖେ ରହିଛି । ସୁତରାଂ ତାକୁ ଚିହ୍ନିବାକୁ ଆପଣଙ୍କର ଜମା କଷ୍ଟ ହେବ ନାହିଁ, ଯଦି ମୁହଁ ତାର ବୋରଖାରେ ଘୋଡ଼ା ହୋଇ ନ ଥାଏ" କହି ସୁଦାମ ବାବୁ ପ୍ରମୀଳାର ଫଟୋଟି ସୁଧାଂଶୁକୁ ଧରାଇଦେଲେ ।

—୨୦—

ଅତୁଳ ବାବୁଙ୍କ ଲାଙ୍ଗୁଡ଼ ଧରି ସୁଧାଂଶୁ ସହଜରେ ଦକ୍ଷିଣେଶ୍ୱରର ଆଡ୍ଡାଟି ଆବିଷ୍କାର କଲା ସତ; କିନ୍ତୁ ସେଠାରେ କିଏ ଅଛୁ, କଣ ହେଉଛୁ, କିଛି ଜାଣିବାକୁ ବିନ୍ଦୁମାତ୍ର ସୁଯୋଗ ପାଇଲା ନାହିଁ । ଭିତରକୁ ନ ଗଲେ ତ ଉପାୟ ନାହିଁ; କିନ୍ତୁ ଯିବ କିପରି ? ଦୁଇ ଗୁଣ୍ଡ ଦିନ ମୁଣ୍ଡରେ ବୋଝ ବହି ଫେରିବାଲା ସାଜି ଘୁରିବୁଲି କଲା; କିନ୍ତୁ ସେଥିରେ ମଧ୍ୟ ଭିତରକୁ ପଶିବା ବାଟ ମିଳିଲା ନାହିଁ । ଏହି ତେଇ ଦିନ ସକାଳ ପ୍ରହରୀ ପରି ଆଡ୍ଡା ଉପରେ ଆଖିରଖି ବୁଝିଛି ସେ—ସନ୍ଧ୍ୟାରେ ଅତୁଳ ବାବୁଙ୍କ ଶୁଭାଗମ ଛଡ଼ା ଫାଟକ ଜମା ଖୋଲିହୁଏ ନାହିଁ । ସେଦିନ ଖଣ୍ଡିଏ ଛିଣ୍ଡା ଚାମିଚ ଦେହରେ ଘୋଡ଼ାଇ ଅଣ୍ଟୁପାଏ ଜୀର୍ଣ୍ଣଶୀର୍ଣ୍ଣ ଲୁଗାଖଣ୍ଡିଏ ପିନ୍ଧି ଇଆଡ଼େ ସିଆଡ଼େ ଘୂରି ବୁଲୁଥିଲା ସେ । ସାତଟା ବାଜିଯିବାରୁ ଫାଟକ ଖୋଲି ଜଣେ ମୁସଲମାନ ଭଦ୍ରଲୋକ ବାହାରକୁ ଆସିଲେ---ଯେ ନିତି ଅସନ୍ତ

ଅତୁଳ ବାବୁଙ୍କ ଯାଉଛନ୍ତି ନେବାପାଇଁ । ସେ ଅରେପଠ ଫୁଟପାଥ୍‌ରୁ ଆସି ପାନ ଦୋକାନରୁ ସିଗାରେଟ କିଣୁଥାନ୍ତି; ସୁଧାଂଶୁ ଭଲିଆ ଟିଏ କାଢ଼ି ତାଙ୍କ ପକେଟ କାଟିବା ପାଇଁ ଯିମିତି ହାତ ଲଗାଇଛି, ତତ୍‌କ୍ଷଣାତ୍ ସେ ହାତଟା ମୋଡ଼ଧରି ଚଟକନା ଉଠାଣି ମଦ୍ଦାଣ ଓଜନର ଗୁମୁଡ଼ାଟାଏ ଗାଲରେ ପକାଇ ଦେଲେ । ବିଚ୍ଛିନ୍ନ ସୁଧାଂଶୁ ସେହି ଶତିବେଳେ ଗୁରୁଅଟେ ସୋଡେଷ ଫୁଲ ଦେଖିଗଲା । "ଚଲ ବଦମାସ, ତୋତେ ଆଜ ପୁଲିସ ହାତରେ ଦେବି," କହି ତାକୁ ଟାଣି ଓଟାର ସେହି ଆଡ଼ୁଆଡ଼େ ନେଇଯାଉଥାନ୍ତି— ଦୁଆରରେ ଆସି ଛିଡ଼ା ହେଲା ଅତୁଳ ବାବୁଙ୍କ ଗାଡ଼ିଟି । ସମସ୍ତେ ଭିତରକୁ ପଶିଲେ । ଅତୁଳ ବାବୁ ପଚାରିଲେ, "ଏହି ନୂଆ ଖବରଟିକୁ କାହୁଁ ଆମଦାନି କଲେ ?"

"ଏହି ମାନ ପାନ ଦୋକାନରୁ ପାଇଛି । ଗୋଟିଏ ଉଜ୍ଜ୍ୱଳତମ ରତ୍ନ । ମୋ ପକେଟ କାଟିବାକୁ ଯାଉଥିଲା । ଆଜ ଏଟାକୁ ପୋଲିସ୍ ହାତରେ ଜମା କରି ଦେଉଛି ।"

ପୋଲିସର ନାମ ଶୁଣି ସୁଧାଂଶୁ ଭେଁ ଭେଁ କରି କାନ୍ଦିଉଠିଲା । ଅତୁଳ ବାବୁ ଧମକ ଦେଇ କହିଲେ, "ଚୁପ୍ କର ପାଜି—ବାଘ ଘରେ ମୂଷା ନାଚ ! ତୁ ସାହେବଙ୍କ ପକେଟ କାଟିବାକୁ ଯାଇଥିଲୁ କିଆଁ ?"

"ବାବୁ ସାହେବ, ମୁଁ ତ ଚାକିରି ପାଇଁ ମୋ ମାମୁ ସଙ୍ଗରେ ଏଠାକୁ ଆସିଥିଲି । ସେ ଆଜକି ସାତ ଦିନ ହେଲା କଳଗାଡ଼ିରେ ଚପି ହୋଇ ମରିଗଲେ । ମୁଁ କାମ ତ ପାଇଲି ନାହିଁ—କିମିତି କରି ଘରକୁ ଯେ ଫେରିବି, ତାର ମଧ୍ୟ ଉପାୟ ନାହିଁ । ଦୁଇ ଦିନ ହେଲା ମୁଁ କିଛି ଜମା ଖାଇବାକୁ ପାଇ ନାହିଁ । ଭୋକର ଜାଳାରେ......"

"ପକେଟ କାଟୁଥିଲୁ, ନା ? ଯା, ଏବେ ଜେଲଖାନାରେ ବସି ବସି ଘଣ୍ଟା ପେଲୁ ଥା; ଅଉ ପେଟ ପୂରାଇ ଲେପ୍‌ସି ଖାଉ ଥା ।"

"ବାବୁ ସାହେବ, ଗଣ୍ଡିଏ ଆଗେ ଖାଇବାକୁ ଦିଅନ୍ତୁ । ବଡ଼ ଭୋକ ଲାଗୁଛି, ମୁଣ୍ଡ ବୁଲାଉଛି ହଜୁର । ବଡ଼ଲୋକ ଆପଣମାନେ, ରଜା ଅମୀର ଲୋକ ।"

"ତୋ ଘର କେଉଁଠି ?"

"ଅନୁକୂଳ ।"

"ତୁ ସତ କହିଲୁ, ଇଆ ଆଗରେ କାହାର ପକେଟ କଟିଚୁ କି ନା ?"

"ନା ହଜୁର ।"

"ଦେଖ୍, ସତ କହିଲେ ଖାଇବାକୁ ପାଇବୁ—"

"ପୋଲିସରେ ଧରାଇ ଦେବେ ନାହିଁ ତ ବାବୁ ସାହେବ ?"

"ନା ।"

"ବାପୁଆ ବଇଦର ସାନପୁଅର ବଲା ଯୋଡ଼ିକ ନେଇ ଦଶ ମାସ ଜେଲ ଖଟିଛି । ଖଲାସ ପାଇବାରୁ ମାମୁ ଏଠାକୁ ଘେନିଅସିଥିଲେ ।"

"ତୁ କାମ କରିବୁ ?"

"ମିଳିଲେ ତ ।"

ଅତୁଳ ବାବୁଙ୍କ ସହିତ ମୁସଲମାନ ଭଦ୍ରଲୋକର କଣ କଥାଭାଷା ହୋଇଗଲା ଆଖିରେ ଅଖିରେ । ସେ ମୁଣ୍ଡ ହଲାଇ କହିଲେ, "ଅଚ୍ଛା, ବାବୁ ସାହେବଙ୍କ କଥାରେ ତୋତେ ରଖିଦିଆଯାଇପାରେ, ଯଦି କାମ ପାଇ ଅଜି ଗ୍ରୈର କି ବଦମାସି କରୁ ନ କରୁ । ସବୁବେଳେ କଥା ମାନି ଚଳିଲେ, ଭଲ କାମ କଲେ ବକସିସ୍ ମଧ୍ୟ ଅଛି; କିନ୍ତୁ ଯେଉଁ ଦିନ ଟିକିଏ ଅବାଧ ହେବୁ, କି କୌଣସି ପ୍ରକାର ବଦମାସି କରିବୁ—ସେହି ଦିନ ତୋତେ ପୋଲିସ ହାତରେ ଧରାଇଦେବି ।"

"ନା ହଜୁର, ଯାହା କହିବେ, ମୁଁ ନିଶ୍ଚୟ ମାନିବି । ବଡ଼ ଗରିବ, ଦୁଃଖିଲୋକ ମୁଁ । ମୋର ବୁଢ଼ୀ ମା ଆଉ ଗୋଟିଏ ସାନ ଭଉଣୀ ଛଡ଼ା ଘରେ କେହି ନାହାନ୍ତି । ଖାଇବାର ବଡ଼ କଷ୍ଟ ଅମର; ତେଣୁ ପିଜା ଘର ଛାଡ଼ି ଏତେ ବାଟ ଧାଇଁଅସିଛୁ ହଜୁର ।"

Calling Bell ଦେବାମାତ୍ରକେ ଗୋଟିଏ ପ୍ରକାଣ୍ଡକାୟ ମାରଣ୍ଡ ମଞ୍ଜି ପରି ମିଟିମିଟିଆ କଳା କାଫ୍ରି ଆସି ଛିଡ଼ାହେଲା । ମୁସଲମାନ ଭଦ୍ରଲୋକ ଅଦେଶ କଲେ, "ଯା, ଇଆକୁ ଖାଇବାକୁ ଦେବୁ । ପଶ୍ଚିମ ପଟ ଘରର କୋଠରୀଟାଏ କାଲି ଖୋଲିଦେବୁ । ଏ ଏଠାରେ କାମ କରିବ । ଅଜି ଏହି ବାରଣ୍ଡାରେ ଶୋଇଥାଉ ।"

ସୁଧାଂଶୁ ସେହି ବାରଣ୍ଡାରେ ଖାଇବା ଧରି ବସିପଡ଼ିଲା—ଖାଇବା ପାଇଁ ନୁହେଁ, ଘର ଭିତରେ କଣ କଥାଭାଷା ଚାଲିଛି ଶୁଣିବା ପାଇଁ ।

ଭିତରର କଥାଭାଷାରେ ଗୋଟିଏ ଦୁର୍ଭେଦ୍ୟ ରହସ୍ୟଜାଲ ଖସି ପଡ଼ିବାକୁ ବସିଲା । ସୁଧାଂଶୁ ଆନନ୍ଦରେ ଅଧୀର ହୋଇଉଠିଲା । କେତେ-ବେଳେ ସମସ୍ତେ ଶୋଇବେ, କେତେବେଳେ ସେ ପଛପଟର ବଗିଚା ଭିତରକୁ ପଶି ଦେଖି ଆସିବ, ସେଠାରେ କିଏ ଅଛି । ଏତେବେଳଯାଏ ଅତୁଳ ବାବୁ କେବଳ ତାଙ୍କରି କଥା କହୁଛି । କିଏ ସେ, ଥରେ ଦେଖିବାକୁ ପଡ଼ିବ ।

ସୁଧାଂଶୁର ଅତୁଳ ସାହସ; କର୍ତ୍ତବ୍ୟନିଷ୍ଠ, ବଳବାନ୍ ଯୁବକ ସେ । ରାତି ୧୨ଟା ବାଜୁ ନ ବାଜୁ ନିଃଶବ୍ଦରେ ଗୋଡ଼ ଚକାଇ ପକାଇ ସେ ପ୍ରତ୍ୟେକ କୋଠରୀ ପାଖକୁ ଯାଇ ଦୁଇଚାରି ମିନିଟ ନୀରବରେ ଛିଡ଼ା ହୋଇ ଦେଖିଲା, କେହି ଚେତା ଅଛନ୍ତି କି ନା । ସୁଧାଂଶୁର ସିନା ଦାରୁଣ ଚିନ୍ତା ମନରେ ବୋଲି ଛଟପଟ ହେଉଛି ସେ, ଅନ୍ୟ ସମସ୍ତେ ତା ପାଇଁ ଜଗି ବସିଥିବେ କାହିଁ ? ସେ ଧୀରେ ଧୀରେ ପଛପଟ ବଗିଚା ଆଡ଼କୁ ଯାଇ ଦେଖେ ତ ଗୋଟିଏ ଚାଳଘର ଭିତରେ ଆଲୁଅ ଜଳୁଛି, ପିଣ୍ଡାରେ ଶୋଇ ରହିଛି ସେହି କାଫ୍ରୀ । ଘୁଙ୍ଗୁଡ଼ି ଶବ୍ଦରେ ନିଶ୍ଚିନ୍ତ ହୋଇ ସୁଧାଂଶୁ ପଛପଟକୁ ଚାଲିଯାଇ ଝରକାରେ ଆଖି ଲଗାଇ ଦେଖେ—ଜଣେ କିଏ ସ୍ତ୍ରୀଲୋକ ଶୋଇ ରହିଛନ୍ତି । କିମିତି କରି ଏହାକୁ ଚେତାଇବ ସେ—ଡ଼ାକିବାମାତ୍ରକେ କାଫ୍ରୀ ପ୍ରହରୀ ଉଠି ବସି ପ୍ରାଣ ନେବ ଯେ ! ଏହି ସାମାନ୍ୟ ତ୍ରୁଟିରେ ହୁଏ ତ ତାର ସବୁ ଶ୍ରମ ନଷ୍ଟ ହୋଇଯିବ । କଣ କରିବ ସେ ? ଦଣ୍ଡେ ଛିଡ଼ା ହୋଇ ଭାବି ଗୋଟିଏ କାଉଁଶ ନେଇ ଶୋଇଥିବା ସ୍ତ୍ରୀଲୋକଟିର ଦେହରେ ଖୁଞ୍ଚିଦେବା ମାତ୍ରକେ ସେ 'ଉଃ' କରି ଉଠି ବସିଲା । ସୁଧାଂଶୁ ଚିହ୍ନିଲା ଏ ପ୍ରମୀଳା । ସଙ୍ଗେ ସଙ୍ଗେ କାଫ୍ରୀ ପ୍ରହରୀର ଜୋତାର ଖଟଖଟ ଶବ୍ଦ ଶୁଣି ସୁଧାଂଶୁ ପାଖରେ ଥିବା ଗଛ ଉପରକୁ କାଠ-ବିରାଡ଼ି ପରି ସଅଳ ଉଠିଯାଇ ଲୁଚି ହୋଇ ବସିରହିଲା । ବାଡ଼ି ଧରି କାଫ୍ରୀ ପ୍ରହରୀ ଇଆଡ଼େ ସେଆଡ଼େ ୨।୪ ଥର ଘୁରିବୁଲି କରି ଝରକାରେ ମୁହଁ ଲଗାଇ ଦେଖିଲା; କିନ୍ତୁ ସନ୍ଦେହଜନକ କିଛି ନ ଖାଇବାରୁ ପୁଣି ଫେରିଯାଇ ଶୋଇପଡ଼ିଲା ସେ । ସୁଧାଂଶୁ ଧୀରେ ଧୀରେ

ଖଟରୁ ଓହ୍ଲାଇ ବାଳିଶଟି ଦେବାମାତ୍ରେ ଶୋଇଥିବା ସ୍ତ୍ରୀଲୋକଟି ପୁଣି ଉଠିବସି ବାଳିଶଟି ଦେହରୁ କାଗଜ ଖଣ୍ଡିଏ ଖସାଇ ନେଇ ଦେଖେ, ତାହାର ଛବି । ପ୍ରମୀଳା ଆଲୁଅ ପାଖରେ ଛବିଟି ଧରିବା ମାତ୍ରେ ଆଖିରେ ପଡ଼ିଲା ତାର ତଳରେ ଲେଖା—"ସାବଧାନରେ କଥାଭାଷା କରନ୍ତୁ, ଜଣା ପଡ଼ିଲେ ସର୍ବନାଶ ।"

ପ୍ରମୀଳା ଝରକା ପାଖରେ ଆସି ଛିଡ଼ାହେଲା । ସୁଧାଂଶୁ ଚୁପ୍‌ଚୁପ କହିଲା, "ରେଙ୍ଗୁନରୁ ଡିଟେକ୍‌ଟିଭ ସୁଦାମ ବାବୁ ଆସିଛନ୍ତି ଅପଣଙ୍କୁ ମୁକ୍ତ କରିବା ପାଇଁ; ମୁଁ ତାଙ୍କର ଲୋକ । ଅଲ୍ପକ୍ଷଣ ହେଲା ଜାଣିପାରିଛୁ, ଅତୁଳ ବାବୁଙ୍କ ସଙ୍ଗରେ ଖୁବ ଶୀଘ୍ର ଅପଣଙ୍କର ବିବାହ ହେବାର ଯୋଗାଡ଼ ଚାଲିଛି । ତା ପୂର୍ବରୁ ଅପଣଙ୍କୁ ମୁକ୍ତ କରିବା ଏକାନ୍ତ ଦରକାର । ପ୍ରସ୍ତୁତ ଥିବେ । ଅପଣଙ୍କ ବୋରଖାଟି ପାଖରେ ଅଛି ନା ?"

ପ୍ରମୀଳା ମଥା ହଲାଇ କହିଲା, "ହଁ" ।

"କାଲିଠାରୁ ଦିନରାତି ସବୁବେଳେ ତାହା ଘୋଡାଇ ହୋଇ ପଡ଼ି ପଟିକୁ ମୁହଁ ମାଡ଼ି ବସିଥିବେ । କାରଣ ପଚାରିଲେ କହିବେ, ଏହି କାଫ୍ରୀଟାର କୁତ୍ସିତ ଗୃହିଣୀ ଦେଖି ଦିନକୁଦିନ ବଡ଼ ଆତଙ୍କ ଆସୁଛି—ଆଉ ସହି ହେଉନାହିଁ । ଅଥବା ମୁଁ ଯାଉଛି । ଭାବିବେ ନାହିଁ—ମୁଁ ମୁକ୍ତିର ସମସ୍ତ ବ୍ୟବସ୍ଥା କରି ରଖିଛି," କହି ସେ ନିଜ ଯାଗାକୁ ଫେରିଆସି ସମସ୍ତଙ୍କୁ ନିଦ୍ରିତ ଦେଖି ସ୍ୱସ୍ତିର ନିଃଶ୍ୱାସ ଛାଡ଼ି ବଞ୍ଚିଲା ।

ସାଫଲ୍ୟର ଆନନ୍ଦରେ ମାତାଲି ହୋଇ ସୁଧାଂଶୁ ଅତି ସନ୍ତର୍ପଣରେ ପ୍ରେତ ପରି ଏ ଘର ସେ ଘର, ଏ କୋଠରୀ, ସେ କୋଠରୀ ଘୂରି ଘୂରି କେତେ କଣ ଖୋଜିବୁଲିଲା ତାକୁ ହିଁ ଜଣା ।

---

—୨୧—

ସୁଦାମ ବାବୁଙ୍କ ଅପେକ୍ଷାରେ ଗ୍ରୀ'ର ଟେବୁଲରେ ବସି ମୃଣାଳ ବାବୁ ସମ୍ବାଦପତ୍ର ପଢ଼ୁଥିଲେ । ଭଉଣୀ ଭାରତୀ ଆସି ପଚାରିଲା, "କେତେ-ବେଳେ ଯିବା, ଦାଦା ?"

"ମୁଁ ତ ପ୍ରସ୍ତୁତ ଅଛି; କିନ୍ତୁ ତୋର ସୁଦାମ ଦାଦା କାହିଁ ?"

"କାହିଁଗଲେ ସେ ?"

"ବାଥ୍ ରୁମ୍‌ରେ ଅଛନ୍ତି ।"

"ଜାଣେ ମୁଁ ତାଙ୍କୁ, ଅଳସୁଆଙ୍କ ଗୁରୁ ।"

"ଆସନ୍ତୁ ସେ, କହି ଦେଉଛି ।"

"ମୋ ଗୁଣ କିଛି କହିବେ ନାହିଁ ।"

"କଣ କହିବେ ନାହିଁ ମୃଣାଳ ବାବୁ" କହି ହସି ହସି ସୁଦାମ ବାବୁ ଚେୟାରଟାଏ ଟାଣି ନେଇ ବସିପଡ଼ିଲେ । ଭାରତୀ ବଡ଼ଭାଇଙ୍କ କାନ୍ଧରେ ହାତ ରଖି ଅନୁନୟ କରି କହିଲା—

"କିଛି କହିବେ ନାହିଁ, ଦାଦା ।"

ସୁଦାମ ବାବୁ ଠୋ ଠୋ ହସିଉଠି କହିଲେ, "ଦାଦା ନ କହିଲେ ମଧ୍ୟ ମୋର କାନ ଅଛି । ଶୁଣି ପାରିଛି ଯେ ସବୁ ।"

ଭାରତୀ କୃତ୍ରିମ କ୍ରୋଧରେ କହିଲା, "କଣ ଶୁଣିଛନ୍ତି ? କିଏ କଣ କହୁଥିଲା ଯେ, ଏତେ ଡ଼ରୁଛୁ ?"

"ନା, ବେଶ୍ କିଛି କେହି କହି ନାହାନ୍ତି ଯେ, ତେବେ ଅଳସୁଆ ଅକାମିକା ଇତ୍ୟାଦି ବେଢଙ୍ଗିଆ ବିଶେଷଣ ପ୍ରୟୋଗ ହେଉଥିଲା ତା'ଉପରେ ପଡ଼ୁଥିଲା । ଭାଇଭଉଣୀ କେହି ଯେତେବେଳେ କହୁନ ନାହିଁ, ଧରିନିଅଯାଉ ମୋ ଉପରେ ମଧୁବାଣୀ ପଡ଼ୁଥିଲା ।"

"ଇଚ୍ଛା କରି ଧରିନେଲେ ଉପାୟ କଣ ?"

"ମଧୁବର୍ଷଣ ଇଚ୍ଛା କରି କେହି କେବେ ଧରନ୍ତି ନାହିଁ । କିନ୍ତୁ ଏ କ୍ଷେତ୍ରରେ ଯେତେବେଳେ ମୋହରି ପାଇଁ ଉଦ୍ଧୁର, ତେତେବେଳେ—"

ଭାରତୀ ଧାଇଁ ପଳାଇ ଯିବାକୁ ବସିଥିଲା, ମୃଣାଳ ବାବୁ ଚଟକରି ହାତଟା ଧରି କହିଲେ—"ବୁଲିବାକୁ ଯିବା ପରା ?"

"ନାଁ, ମୁଁ ଯିବି ନାହିଁ ।"

ସୁଦାମ ବାବୁ ଭାରତୀର ମୁଣ୍ଡରେ ହାତ ଦେଇ କହିଲେ, "ପାଗଳି, ଦେଖ୍...ଜମା ପାଞ୍ଚଟା ବାଜିଛି । ସାଢ଼େ ପାଞ୍ଚଟାରେ ଯିବାର କଥା ଥିଲା ନା ?"

ମଇଳା ଧୋତି ଓ ଛିଣ୍ଡା ଫଟା ବେଶଧାରୀ ଯୁବକ ଜଣକୁ ଆସିବାର ଦେଖି ସମସ୍ତେ ଜିଜ୍ଞାସୁ ନୟନରେ ତା ଆଡ଼କୁ ଅନାଇ ରହିଲେ । ସେ ବରାବର ପାଖରେ ପହଞ୍ଚି ନମସ୍କାର କରି ଚେୟାରଟାଏ ଦଖଲ କରି ବସିବାରୁ ଖୁରଣୀ ଘୃଣାରେ ନାକ ଟେକି ଅନ୍ଦରକୁ ଚାଲିଗଲା । ବିସ୍ମିତ ମୃଣାଳ ବାବୁ ଉଚ୍ଚ କଣ୍ଠରେ ପଚାରିଲେ, "ତମର ପ୍ରୟୋଜନ ?"

"ବର୍ମାର ଡିଟେକ୍‌ଟିଭ୍ ସାହେବଙ୍କ ସଙ୍ଗରେ ବିଶେଷ ଦରକାର ଅଛି ।"

"ଯଦି କହେଁ, ସେ ଏଠାରେ ନାହାନ୍ତି ।"

"ସତ୍ୟର ସମ୍ପୂର୍ଣ୍ଣ ଅପଳାପ କରାହେବ ।"

"କିଏ ତମେ ?"

"ତାଙ୍କର ଲୋକ ।"

ଚମକିତ ସୁଦାମ ବାବୁ ଅବାକାବା ହୋଇ ପଚାରିଲେ, "ମୋର ଲୋକ ?"

"ଗମ୍ଭୀର ହୋଇ ନବାଗତ ଉତ୍ତର କଲା, "ଆଶ୍ଚର୍ଯ୍ୟ ହେବାର ଏଥିରେ କିଛି ନାହିଁ, ତେବେ ଯଦି ଅବିଶ୍ୱାସ ହୁଏ—ବିଦାୟ ।"

ମୃଣାଳ ବାବୁ ପ୍ରଥମରୁ ଲକ୍ଷ୍ୟ କରୁଥିଲେ—ନବାଗତ କିଏ । ଦୁଇ ଚାରିଥର କଥାଭାଷା କରିବାରୁ ଅଧିକ୍ଷଣ ଗୀତ ହଠାତ୍ ମନେ ପଡ଼ିଲା ଭଳି ସୁସ୍ପଷ୍ଟ ହୋଇଉଠିଲା ତରୁଣ କର୍ମୀ ସୁଧାଂଶୁର କମନୀୟ ଛବିଟି । ଚେୟାରରୁ ଉଠି ସେ ତା ପିଠିରେ ଗୋଟାଏ ଚାପୁଡ଼ା ମାରି ସେ କହିଲେ, "Super excellent ସୁଧାଂଶୁ ! ଛଦ୍ମବେଶ ପାଇଁ ଅଭିନନ୍ଦନ କରେ । କିଛି ଖବର ଅଛି ?"

"ନ ହେଲେ ଗଞ୍ଜେଇ କିଣିବାକୁ ଆସି ଏଠାକୁ ଧାଆନ୍ତି ?"

"ତା ପୂର୍ବେ କପେ ଚା ହୋଇଯାଉ ।"

ଚା କପଟି ଧରି ସୁଧାଂଶୁ ଜିଜ୍ଞାସୁ ନେତ୍ରରେ ସୁଦାମ ବାବୁଙ୍କ ଆଡ଼େ ଅନାଇ ରହିବାର ଦେଖି ସେ କହିଲେ, "ମୃଣାଳ ବାବୁଠାରେ ବ୍ୟକ୍ତିଗତ ଭାବରେ ଗୋପନ କରିବାକୁ କିଛି ନାହିଁ, କିନ୍ତୁ ଏ ଅଦ୍ଭୁତ ବେଶରେ ଯେ ?"

"ଆପଣଙ୍କ ଦସ୍ତାର ପ୍ରାର୍ଣ୍ଣ । ଯେଉଁ ଶଇତାନଗୁଡ଼ାଙ୍କ ପଛରେ ଲଗାଇଦେଇଛନ୍ତି, ସେଗୁଡ଼ା ସାତ ଘାଟରେ ପାଣି ପିଅଇ ଛାଡ଼ୁଛନ୍ତି ନା! ସାତ ସାତ ଦିନ କାଳ ଫୁଟ୍‌ପାଥରେ ରାତି ଦିନ କଟାଇଲି; କିନ୍ତୁ ଭିତରକୁ ପଶିବା ସୁଯୋଗ ଜମା ମିଳିଲା ନାହିଁ । ଶେଷରେ ପକେଟ କାଟିବାକୁ ଯାଇ ପୋଲିସ୍ ହାତରେ ନ ପଡ଼ି ଅତୁଲ ବାବୁଙ୍କ ଦସ୍ତାରେ ଗୃହର ଖଣ୍ଡିଏ ପାଇଯାଇଛି । ଆପଣଙ୍କ ପ୍ରମୀଳା ଦେଈ ମଧ୍ୟ ସେହିଠାରେ ଅଟକି ଅଛନ୍ତି । ଆଜି ତାଙ୍କ ବିବାହ । ସକାଳୁ ଖବର ଜାଣିପାରି କାଫ୍ରି ଜସ୍ତୁଅଲଠାରୁ ଗଞ୍ଜେଇବଟିକ ଫୋପାଡ଼ିଦେଲି । ଗଞ୍ଜେଇ ନ ପାଇ ସେ ଅଚ୍ଛି ପାଚ୍ଛି ହୋଇ ମୋତେ କିଣିବାକୁ ପଠାଇଲେ । ମୁଁ ସିନା ସିଧା ଏଠାରେ ଆସି ହାଜର । ଏହି କେଇ ଦିନ ତା ସେବା କରି କରି ହରକତ ହୋଇଗଲିଣି । ଆଉ ୧୦।୧୫ ଦିନ ଇମିତି ଭାବରେ ରହିବାକୁ ପଡ଼ିଲେ ଅସ୍ତିତ୍ୱ ମୋର ଥିବ କି ନା, ସନ୍ଦେହ ।

"ଅଶ୍ୱାର, ସୁବା, ଧୂର୍ଜଟିପ୍ରସାଦ—ଏମାନଙ୍କର ଖବର କଣ ?"

"ଆଶ୍ୱାର ସାହେବ ସୁବାକୁ ନେଇ ବାହାରିଛନ୍ତି—କିଏ ଜଣେ ମାଷ୍ଟରକୁ ଗିରଫ କରିବା ପାଇଁ । ପ୍ରମୀଳାର ବିବାହରେ ବିଘ୍ନ ସେ ।"

"ବିଘ୍ନ ?"

"ହଁ, ଆଜି ଅତୁଲ ସଙ୍ଗରେ ପ୍ରମୀଳାର ବିବାହ—ଆନନ୍ଦର ଦିନ; ତେଣୁ ମାଷ୍ଟରଙ୍କୁ ହତ୍ୟା କରାଯିବ । ତା ନ ହେଲେ ଆପଣଙ୍କ ଧୂର୍ଜଟିପ୍ରସାଦ ଆଉ ଏ ଦଳରେ ଜମା ରହିବେ ନାହିଁ । ମାଷ୍ଟରଙ୍କ ବିବାହିତା ପତ୍ନୀକୁ ଛାଡ଼ କୁମାରବାହାଦୁର ସ୍ୱର୍ଗକୁ ମଧ୍ୟ ଯିବାକୁ ଅନିଚ୍ଛୁକ । ସେ ସଙ୍ଗରେ ନ ଥିଲେ ଏମାନଙ୍କର ଖେଳାଖେଳା ବେଶ୍ ଜମିବ ନାହିଁ । ରାଜପୁରରେ କଣ ଗୋଟାଏ ଷଡ଼ଯନ୍ତ୍ର ଚାଲିଛି, ସେଥିରେ ତାଙ୍କର ସାହାଯ୍ୟ ଏକାନ୍ତ ଲୋଡ଼ା । ମାଷ୍ଟର ବାବୁ ଥିଲେ ତ ତାଙ୍କ ସ୍ତ୍ରୀକୁ ନେଇଯିବା ଅଭିକା କଷ୍ଟକର; ତେଣୁ ନିପାତର ଏ ବ୍ୟବସ୍ଥା । ମୁଁ ଆଉ ବେଶି ଡେରି କରିପାରୁ ନାହିଁ । ଆପଣ ୭ଟା ବେଳେ ଦକ୍ଷିଣେଶ୍ୱର କାଳୀମନ୍ଦିର ପଡ଼ିବା ରାସ୍ତାର ଠିକ ସାମନାରେ ପୂର୍ବ ପଟକୁ ଯାଉଁ ଯାଉଁ ଯେଉଁ ଗଳିଟି ପାଇବେ, ତାର ଡାହାଣ ପଟର ଭଙ୍ଗା ପାଚେରୀଘେରା ବଗିଚା ଘରଟିର ପଶ୍ଚିମ ତରଫକୁ ଯାଇ ଝାଉଁଗଛ ଉପରେ

ଉଠି ଭିତରକୁ ପଶିବେ । ମୁଁ ପ୍ରମୀଳାକୁ ବାହାର କରିଦେବାର ସମସ୍ତ ଯୋଗାଡ଼ଯନ୍ତ୍ର କରି ରଖିଛି । ଆଜି ସେଠାରେ ଶଇତାନର ତାଣ୍ଡବ ଲୀଳା ଚାଲିବ । ଭିତାହର ମନ୍ତ୍ର ପଢ଼ିବା ପାଇଁ ଆଗ୍ରହୀ ଜଣକୁ ନେଇ ଧୂର୍ଜଟିପ୍ରସାଦ ସଙ୍ଗରେ ଅତୁଳ ବାବୁ ଆସିବେ । ସାକ୍ଷ୍ୟ ପାଇଁ ଦୁଇ ଚାରି ଜଣ ଲୋକ ମଧ୍ୟ ଥିବେ । ଆପଣଙ୍କ ଆସାମୀମାନଙ୍କୁ ଗିରଫ କରିବା ପାଇଁ ଅପରାଧର ସୀମା ନାହିଁ । ପ୍ରାୟ ତିନି ଚାରି ଲକ୍ଷ ଟଙ୍କାର ଜାଲ ନୋଟ, ନୋଟ ତିଆର କରିବା ପାଇଁ ଯନ୍ତ୍ରପାତି ସବୁ ମହଜୁଡ଼ । ଅଧିକନ୍ତୁ ଆଜି ମାଷ୍ଟରଙ୍କୁ ବିଷ ପ୍ରୟୋଗରେ ହତ୍ୟା କରାଯିବ ।”

ମୃଣାଳ ବାବୁ ଚମକି ଉଠି କହିଲେ, “ବିଷ !”

“ହିଁ, ପୃଥିବୀରେ ଯେତେ ପ୍ରକାର ବିଷ ଅଛି, ସବୁ ସେ ଡାକ୍ତରଖାନାର ନଖଦର୍ପଣରେ ରହିଛି । ଦନସ୍ତିକ ବିଷବଟିକା, ବିଷଇନ୍‌ଜେକ୍‌ସନ ତିଆରି ଚାଲିଛି ।”

“ଲୋକଟା କିଏ ?”

“ଖୁବ୍ ।”

“ମୁହଁରେ ବସନ୍ତର ଦାଗ ଅଛି—କଳା କାଠ୍‌କାଠିଆ—ଲମ୍ବା ଯୁଆନ୍ ?”

“ଅବିକଳ ପ୍ରତିରୂପ !”

“ଧନ୍ୟବାଦ ସୁଧାଂଶୁ, ଏ ପାଜିଟା ଆଜିକି ଛଅ ବର୍ଷ କାଳ ଧରି ମୋତେ, କେବଳ ମୋତେ କାହିଁକି, ସମସ୍ତ C.I.D. ବିଭାଗକୁ ନାକାଳ କରି ଛାଡ଼ିଲାଣି । ଦିଲ୍ଲୀ ଲକ୍ଷ୍ନୌ ଆଗ୍ରା ଯୁଆଡ଼େ ଯାଉଛି ଗୋଟାଏ ବିରାଟ ଆତଙ୍କର ସୃଷ୍ଟି କରି ଛାଡ଼ୁଛି । ମାତ୍ର କେହି ଆଜଯାଏ ତାର ଧକ୍କା ପାଇ ନାହାନ୍ତି । ଛଅବର୍ଷ ହେଲା ଫେରାର ସେ । ଏହାକୁ ଧରିବା ପାଇଁ ଦଶ ହଜାର ଟଙ୍କା ପୁରସ୍କାର ଘୋଷଣା କରାଯାଇଛି; କିନ୍ତୁ ଆଜଯାଏ କେହି ତାର ସନ୍ଧାନ ପାଇ ନ ଥିଲେ, ତମରି କମାଲରେ ସୁନା ଫଳିଲା । କିନ୍ତୁ ସାବଧାନ, ବଡ଼ ଭୀଷଣ ଜୀବ ସେ ! ପାଖକୁ ଯିବା ନାହିଁ ଏମାନଙ୍କୁ—ଗିରଫ କରିବା ପାଇଁ କେତେ ଲୋକ ନେବା ?”

“ଆପଣ ମଧ୍ୟ ଯିବେ ?”

“ନିଶ୍ଚୟ ।”

"ସଶସ୍ତ୍ର ୧୫।୨୦ ଜଣଙ୍କ ବଦଳୁ ଅଧିକା ଦୁଇ ଜଣ ମାତ୍ର ଲୋକ ଦରକାର। ଜଣେ ପ୍ରମୀଳାକୁ ନେଇ ଆସିବ, ଅନ୍ୟ ଜଣକୁ ପ୍ରମୀଳା ସଜାଇ କୋଠରୀରେ ବନ୍ଦ କରି ରଖିବାକୁ ପଡ଼ିବ। ଅଜିକି ପାଞ୍ଚଦିନ ହେଲା ମୋହର କଥାରେ ସେ ଦିନରାତି ବୋରଖା ପିନ୍ଧି ରହୁଛନ୍ତି। ଆପଣମାନେ ଠିକ୍ ସାତଟା ବେଳେ ଯାଇ ପହଞ୍ଚିବେ। ଦେଖି ଆପଣଙ୍କ ଘଣ୍ଟାରେ କେତେ ବାଜିଲା ?"

"ପାଞ୍ଚଟା ସାତ—।"

ଅଣ୍ଟାରୁ କାଢି......ନିଜ ଘଡ଼ିକୁ ଅନାଇ ସୁଧାଂଶୁ କହିଲା, "ଠିକ୍ ଅଛି। ଡେରି କଲେ ସବୁ ପଣ୍ଡ ହେବ। ଦଳବଳ ଆସି ପହଞ୍ଚିବା ପୂର୍ବରୁ ପ୍ରମୀଳାଙ୍କୁ ମୁକ୍ତ କରିବାକୁ ପଡ଼ିବ, ନତୁବା ତାଙ୍କ ନାମ ଛପା ରହିବ ନାହିଁ।"

"ଠିକ ସାତଟାରେ ଯାଇ ପହଞ୍ଚିବୁ—ନିଶ୍ଚିନ୍ତ ଥାଆନ୍ତୁ।"

—୨୨—

ପ୍ରମୀଳାକୁ ନିର୍ବିବାଦରେ ମୃଣାଳ ବାବୁଙ୍କ ଗାଡିରେ ଉଠାଇ ଦେଇ, ସୁଧାଂଶୁ ଓଦା-ଛବଡ଼ ପରି କାଫ୍ରୀ ଜଗୁଆଳଟାର ପାଖରେ ଯାଇ ବସି-ପଡ଼ିଲା—ଲୋକ ଯିମିତି କେତେ ଅନୁଗତ, ନିସ୍ପୃହ ବିଗ୍ରହ। କୌଣସି କଥା କିଛି ଜଣା ନାହିଁ ତାକୁ। କାଫ୍ରୀଟାର ତ ଜମା ଅଳ୍ପ ଫୁରସତ୍ ନାହିଁ। ସେହି ସକାଳୁ ବସ ଅଟିକା ଧରି ଚୁଲିଶାଳରେ ବସି ରହୁଛି ସେ—ନିର୍ଯ୍ୟାସ କାଢ଼ିବା ପାଇଁ। କି ଜୀବନ୍ତ ବସ! ଚୋପାଟିଏ ରକ୍ତରେ ମିଶୁ ମିଶୁ ସମସ୍ତ ରକ୍ତ ପାଣି ହୋଇ ବାହାରି ଯିବ ନା! ମୃତ୍ୟୁ ପରେ ଶତ ଚେଷ୍ଟା କଲେ ମଧ୍ୟ ପ୍ରକୃତ କାରଣ କେବେହେଲେ କେହି ଜାଣି ପାରିବେ ନାହିଁ। ଅଠଟା ବାଜୁ ବାଜୁ ବୈଦ୍ୟୁତିକ ଘଣ୍ଟାରେ ହାତ ପଡ଼ିଲା। କାଫ୍ରୀ ଜଗୁଆଳଟା ସଦର ଫାଟକକୁ ଯାଇ କବାଟ ଫାଙ୍କରେ ଅତୁଲ ବାବୁଙ୍କ ଗାଡ଼ି ଦେଖି ତତ୍କ୍ଷଣାତ୍ ଦୁଆର ଖୋଲି ଦେଲା। ଅତୁଲ ବାବୁଙ୍କର ଆଜି ଆନନ୍ଦର ସୀମା ନାହିଁ। ପ୍ରମୀଳା ସଙ୍ଗେ ସଙ୍ଗେ ରାୟବାହାଦୁରଙ୍କ ବିପୁଳ ସମ୍ପତ୍ତି ଆଜି ହେଉ ବା କାଲି ହେଉ, ତାଙ୍କ ହାତକୁ ତ ଆସିବ ନିଶ୍ଚୟ। ଥରେ କୌଣସି ମତେ ବିବାହଟା ହୋଇ ଯାଉ ନା? ତା ପରେ—ପଛ କଥା ପଛରେ ଦେଖାଯିବ। ସମ୍ପତ୍ତି ମିଳୁ ବା ନ ମିଳୁ, ଅପମାନ ଲାଞ୍ଛନାର ତ ପ୍ରତିଶୋଧ ନିଆ ହେବ। ଏହା କଣ କମ ଲାଭ? ଗରିବ ବୋଲି, ଦୁଃଖୀ

ବୋଲି ସିନା ତାକୁ କୁକୁର ବଗ୍ରେଡ଼-ପରି ରାୟବାହାଦୁର ଦିନେ ହଟା-ବରଗେ ଦରୱାନ ହାତରେ ଛଡ଼ାଇ ଦେଇଥିଲେ । ଆଜି ତାର ଠିକ ପ୍ରତିଶୋଧ ! ଆୟାର ସାହେବ ଥରେ ଫେରିଲେ ହୁଏ ।

ଅର୍ଜୁନ ଓ ତାଙ୍କ ସହକାରୀକୁ ନେଇ ଚାପ୍ରାଶୀ କମ୍ପାଉଣ୍ଡଟା ପଶ୍ଚିମ ପଟ ଘରର କୋଠରୀଟିଏ ଖୋଲି ବସାଇଦେଲା । ଅତୁଲ ବାବୁ ପଚାରିଲେ,

"ଆୟାର ସାହେବ କେତେବେଳେ ଯାଇଛନ୍ତି ?"

"ପ୍ରାୟ ଚାରିଟା ବେଳେ ।"

"ଫେରିବେ କେତେବେଳେ ?"

"ଶିକାରଟାକୁ ପାଇବା ମାତ୍ରେ ।"

"କୁମାରବାହାଦୁର କହିଲେ, "ସମ୍ଭବତଃ ଏତେବେଳକୁ ଫେରୁଛନ୍ତି ସେମାନେ ।"

ଅତୁଲ ବାବୁ ହସି ହସି କହିଲେ, "ଜାଣିଲେ କିପରି ?"

"ସେ ଠିକ୍ ୭ଟା ୭୫ ଟାରେ ବସାକୁ ଫେରନ୍ତି ଯେ ।" ବାସ୍ତବିକ କୁମାର ସାହେବଙ୍କ ଅନୁମାନ ଅଭ୍ରାନ୍ତ । ଅଳ୍ପ କ୍ଷଣ ପରେ ସଂଜ୍ଞାହୀନ ଲଳିତ ବାବୁକୁ ନେଇ ସୁବା ଓ ଆୟାର ସାହେବ ଆସି ପହଞ୍ଚିଲେ ।

ଲଳିତକୁ ଆଣି ସୋଫା ଉପରେ ପକାଇ ଦେଇ ଆୟାର ପଚାରିଲେ, "ନର୍ଫାସ ହେବାକୁ ଡେରି କେତେ ?"

ଚାପ୍ରାଶୀ ମୁଣ୍ଡ ଅଙ୍କିଷି ଅଙ୍କିଷି କହିଲା, "ପ୍ରାୟ ଅଧଘଣ୍ଟାଏ ଡେରି ଅଛି ।"

"ମୁଁ ଯେ କହୁଥିଲି ଆଜି ଟିକିଏ ଚଞ୍ଚଳ ଆରମ୍ଭ କର ।" ଅତୁଲ ବାବୁ ଶାଢ଼ୀ, ବ୍ଲାଉଜ ସଙ୍ଗରେ ଦୁଇ ଚାରିଟି ଅଳଙ୍କାର କାଢ଼ି ସୁବା ସାହେବଙ୍କ ହାତରେ ଦେଇ କହିଲେ, "ଏଗୁଡ଼ାକ ପ୍ରମୀଳାଙ୍କୁ ପିନ୍ଧାଇ ଦିଅନ୍ତୁ ।"

ସୁବା ସାହେବ ଠୋ ଠୋ ହସି ଉଠି କହିଲେ, "ପ୍ରମୀଳାକୁ ପିନ୍ଧାଇ ଆଣିଛି; କିନ୍ତୁ ଆମ—"

'ପ୍ରସ୍ତୁତ ହୋଇ ଆସିଛୁ, ହଜୁର୍', କହି ଅତୁଳ ତାକୁ ଦଶ ହଜାର ଟଙ୍କାର ନୋଟ ଧରାଇ ଦେବାରୁ ସେ ସୁଧାଂଶୁ ଆଡ଼କୁ ଅନାଇ କହିଲେ, "ଯା, ଏଗୁଡ଼ାକ ସେ ଘରେ ଦେଇ ଆ । କହିବୁ, ଚଞ୍ଚଳ ପିନ୍ଧି ନିଅନ୍ତୁ ।"

ଆସ୍ଥାର ସାହେବଙ୍କ ପାଖକୁ ଯାଇ କୁମାରବାହାଦୁର ପଚାରିଲେ, "କେଉଁଠାରେ ଗିରଫ କଲେ ?"

"ତାଙ୍କର ଦୁଆର ମୁହଁରେ ।"

"ଆସିବାକୁ ମଙ୍ଗିଲା ?"

"ମଙ୍ଗିବ ନାହିଁ ?" ସକାଳେ ଦୁଇ ଘଣ୍ଟା ମାତ୍ର ପାଠ ପଢ଼ାଇ ମାସକୁ ଟ ୧୫୦ ଙ୍କା ବେତନ ଆଜକାଲିକା ଦିନରେ କେଉଁ ଜଣଙ୍କ କପାଳରେ ମିଳେ, କହିଲ ? ତା ଛଡ଼ା ବେଶି ବାଟ ମଧ୍ୟ ଯିବାକୁ ପଡ଼ିବ ନାହିଁ, ଶ୍ୟାମବଜାରରୁ କଲେଜ ଷ୍ଟ୍ରିଟ୍ । ଗାଡ଼ିରେ ବସି ବସି ସୁନା ସାହେବ ଗୋଟିଏ ସିଗାରେଟ୍ଟି ପିଅଇ ଦେଲେ—କଲେଜ ଷ୍ଟ୍ରିଟର ମଣିଷ ଅକ୍ଳେଶରେ ଦକ୍ଷିଣେଶ୍ୱରରେ ଆସି ହାଜର । ଅଜ ସବୁ କାମ ଶେଷ କରି ଗୃରଟା ଟ୍ରେନରେ କାନପୁର ବାହାରି ପଡ଼ିବାକୁ ହେବ, ମନେ ଅଛି ନା ?"

"ଜାନୁ ହୁଜ ।"

ତାକୁ ଲଜ୍ଜା ଯେ ଆପଣ କମାରୁ ଟଳିବେ ନାହିଁ, ସେ କଥା ମୋର ଭଲରୂପେ ମନେ ଅଛି ଯେ ! ଏକାଠି କାମ ଶେଷ କରି ତାକୁ ନେଇ ଆସିବାକୁ ଭୟ ନାହିଁ ।" ଛଦ୍ମବେଶୀ ସୁଧାଂଶୁ ଫେରି ଆସି କହିଲା, "ପିନ୍ଧିବାକୁ ଜମା ମଙ୍ଗୁ ନାହିଁ ସେ ।"

"ମଙ୍ଗୁ ନାହିଁ ! ଆଚ୍ଛା ମୁଁ ଯାଉଛି ଚାଲ" କହି ଆସ୍ଥାର ସାହେବ ନିଜେ ବାହାରି ପଡ଼ିଲେ । ପଛେ ପଛେ ଗୋଡ଼ାଇଲା ସୁଧାଂଶୁ । ଆସ୍ଥାର– ସାହେବ ଦୁଇ ଚାରିଥର ଡକାଡକି କଲେ, ପ୍ରମୀଳା କିନ୍ତୁ ନିରୁତ୍ତର; ତଳ ପଟ ମୁହଁ କରି ବସି ରହିଲା ସେ । ଆସ୍ଥାର ସାହେବ ବିରକ୍ତ ହୋଇ କହିଲେ, "ତମରି ଭଲ ପାଇଁ କହୁଛି । ଏଗୁଡ଼ିକ ସବୁ ପିନ୍ଧିନିଅ । ନ ହେଲେ ବୁଝିବ, ଅବାଧ୍ୟତାର ଫଳ କଣ ?"

ପ୍ରମୀଳା ତଥାପି ନୀରବ । ଆସ୍ଥାର ସାହେବ ହୁଙ୍କାର କରି କହିଲେ, "ମୋ କଥାରେ ଅବାଧ୍ୟ ହୋଇ ଜଣକର ଦଶା କମିତି ଘଟେ, ନିଜ ଆଖିରେ ଦେଖିବ ଆସ, କି ମର୍ମନ୍ତୁଦ ଯନ୍ତ୍ରଣା ତାର ।"

'ମୁଁ ଯାଉଛି, ଏଙ୍କୁ ସବୁ ପିନ୍ଧି ଘୋଡ଼ି ଚମ୍ପଲ କରି ଇୟା ସଙ୍ଗରେ ଆସ, ନ ହେଲେ ଜୋର ଜବରଦସ୍ତି କରିବାକୁ ବାଧ୍ୟ ହେବୁ' କହି ଆୟାର ସାହେବ ଚାଲି ଆସିଲେ। ସୁଧାଂଶୁ କହିଲା, "ସେ ମାଷ୍ଟରଙ୍କୁ ଅଜ୍ଞାନ କରି ଧରି ଆଣିଛନ୍ତି। ଏବେଣି ବିଷ ଇଞ୍ଜେକସେନ୍‌ରେ ହତ୍ୟା କରିବେ। ଆଉ ଡେରି କଲେ ଚଳିବ ନାହିଁ।"

"ଶକ୍ତି ପାରିଲ ନାହିଁ କିଏ ସେ ?"

"ମୁହଁରେ ଲୁଗା ବନ୍ଧା ରହିଛି। ତତ୍‌କ୍ଷଣାତ୍ ସୁଦାମ ବାବୁ ଶାଢ଼ୀ, ବ୍ଲାଉଜ, ଗହଣାପତ୍ର ପିନ୍ଧି ମୁଣ୍ଡରେ ଓଢ଼ଣା ଟାଣି ଅତି ସଙ୍କୁଚିତ ଭାବରେ ଯାଇ କୋଣରେ ଥିବା ଚେୟାରଟିରେ ବସିପଡ଼ିଲେ। ଆୟାର ସାହେବ କହିଲେ, "ହୁଁ, ଇମିତି ସୁନା ଝିଅ ପରି କଥା ଶୁଣିଲେ ବୃଥାରେ ଅଜ କଷ୍ଟ ପାଇବାକୁ ହେବ ନାହିଁ। ଅବାଧ ହୋଇ ଏ ଲୋକଟା କି ଯନ୍ତ୍ରଣା ଭୋଗ କରିବ, ନିଜ ଆଖିରେ ଦେଖିବ। ଇଞ୍ଜେକ୍‌ସନ ପ୍ରସ୍ତୁତ ?"

କାପ୍ରୀ ମୁଣ୍ଡ ହଲାଇ କହିଲା, "ସବୁ ଠିକ।"

"ରଲ୍‌ଓ।"

ଇଞ୍ଜେକସନ୍ ଦେବା ପାଇଁ ଲଳିତ ବାବୁର ହାତ ଧରୁ ଧରୁ ସୁଦାମ ବାବୁ ନିମେଷ ମଧ୍ୟରେ ଗୁଳି କରି କାପ୍ରୀଟାର ମଣିବନ୍ଧ ଖସାଇ ଦେଲେ। ସଙ୍ଗେ ସଙ୍ଗେ ପନ୍ଦର କୋଡ଼ିଏ ଜଣ ସଶସ୍ତ୍ର ପୁଲିସ୍‌କର୍ମୀଙ୍କୁ ନେଇ ହଠାତ୍ ମୃଣାଳ ବାବୁ ଆସି ଆଦେଶ କଲେ, ସମସ୍ତେ ମୁଣ୍ଡ ଉପରକୁ ହାତ ଉଠାଇ ରଖ, ନହେବା ଗୁଳି କରି ମାରିଦେବି।" କାପ୍ରୀଟା ତତ୍‌କ୍ଷଣାତ୍ ବିଷ ଅଟିକାରେ କଟା ହାତଟା ତାର ବୁଡ଼ାଇ ଦେଇ ହସିଉଠିଲା। କି ସେ ପୈଶାଚିକ ହସ। କହିଲା, "କୁଞ୍ଜିକୁ ଧରି ଗାରଦରେ ରଖିବା ଭଳି ଗାରଦ ଆଜିଯାଏ ସୃଷ୍ଟି ହୋଇ ନାହିଁ।" ସମସ୍ତଙ୍କ ହାତରେ ହାତକଡ଼ା ପଡ଼ି ସାରିବା ଆଗରୁ ମଙ୍ଗୁଳିଟା–କଦଳୀଗଛ ପରି ମାଟିରେ ପଡ଼ିଗଲା। ତା ପାପର ଉଚିତ ଶାସ୍ତି ଏ ଜଗତରେ ନାହିଁ ବୋଲି ହୁଏ ତ ନିୟତି ଡାକି ନେଲା ତାକୁ ପରପାରକୁ।

ଫାଙ୍କ ପାଇ ସେ ପଛ ଦୁଆର ଦେଇ କୁମାର ଧୂର୍ଜଟିପ୍ରସାଦ ଧାଇଁ ପଳାଉଥିଲେ, ଶିକାରୀ କୁକୁର ପରି ପଛରେ ସୁଧାଂଶୁ ଧାଇଁ ଯାଇ ଧରି

